# ଉତ୍କଳ ସମ୍ମିଳନୀର

# ପ୍ରସ୍ତାବ ସମୂହ

(୮-୧-୧୯୯୫ ଠାରୁ ୯-୮-୨୦୦୦)


## ଆଚାର୍ଯ୍ୟ ଭାବାନନ୍ଦ

ଆଜୀବନ ସଭ୍ୟ - ଉତ୍କଳ ସମ୍ମିଳନୀ



— ପ୍ରକାଶକ —

ଆଚାର୍ଯ୍ୟ ଭାବାନନ୍ଦ

ଭୁବନେଶ୍ୱର - ୭୫୧ ୦୦୧

୨୦୦୫

## ॥ ଭୂମିକା ॥

ଉତ୍କଳ ସମ୍ମିଳନୀର ଜନ୍ମ ବର୍ଷ ୧୯୦୩ ବୋଲି ଜଣାଶୁଣା କଥା । କେହି କେହି ଏହା ୧୯୦୨ ରମ୍ଭା ସମ୍ମିଳନୀରୁ ଆରମ୍ଭ ବୋଲି କହନ୍ତି । ପୁଣି ମଧୁସୂଦନଙ୍କର ଉକ୍ତିରୁ ଜଣାଯାଏ ଯେ ସେ କେତେକ ଛାତ୍ରଙ୍କ ସହିତ ରେଭେନ୍ସା କଲିଜିଏଟ ସ୍କୁଲରେ ଏଭଳି ଏକ 'ସମ୍ମିଳନୀ' ପ୍ରତିଷ୍ଠା କରିବା କଥା ପରିକଳ୍ପନା କରୁଥିଲେ । ଇତିହାସ ରଚନା କାଳରେ ଯେଉଁଠାରେ ପ୍ରାଥମିକ ଦିନ ତାରିଖ ବର୍ଷର ପ୍ରାମାଣିକ ତଥ୍ୟ ଜଣା ନ ଥାଏ, ସେଠାରେ ଜନଶ୍ରୁତିକୁ ଉପାଦାନ ରୂପେ ଗ୍ରହଣ କରାଯାଇଥାଏ । ଏହା ମଧ୍ୟ ଏକ ସମ୍ଭାବ୍ୟ-ଇତିହାସ ।

୧୯୦୨ ମସିହାରୁ ଉତ୍କଳ ସମ୍ମିଳନୀର ଜନ୍ମ ବୋଲି ଗ୍ରହଣ କରିନେଲେ, ଦଲୀଲ୍ ବା ପ୍ରମାଣ ସାହାଯ୍ୟରେ ଏହାର ଏକ ବିଧିବଦ୍ଧ ଇତିହାସ ରଚନା କରାଯାଇ ନ ଥିବା ପରିତାପର ବିଷୟ । ଏ ଦିଗରେ ସେ କାଳର ପତ୍ରପତ୍ରିକା, ଚିଠିପତ୍ରରୁ ଏ ଇତିହାସ ରଚନା କରିବା ସମ୍ଭବ ହେଲେ ମଧ୍ୟ ଯାହା କିଛି ଇତିହାସ ଏ ପର୍ଯ୍ୟନ୍ତ ରଚନା କରାଯାଇଛି, ତାହା ପରିପୂର୍ଣ୍ଣ ଇତିହାସ ବୋଲି ଗ୍ରହଣ କରାଯାଇ ପାରିବ ବୋଲି ବିଶ୍ୱାସ ଜନ୍ମୁ ନାହିଁ । ଏଭଳି ଇତିହାସ ରଚନା କରିବାକୁ କୌଣସି ଗବେଷକ ବା ଅନୁଷ୍ଠାନ ମନ ଧ୍ୟାନ ଦେଇଥିବା ଭଳି ମନେ ହେଉନାହିଁ । ଏ ଦିଗରେ ମଧ୍ୟ କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ ଏ ସବୁ ପ୍ରାମାଣିକ ତଥ୍ୟ ମିଳିବାର ସମ୍ଭାବନା ଊଣା । ତେବେ ଏ ଦିଗରେ କେତେକ ପ୍ରଚେଷ୍ଟା ଯେ ଚାଲିଛି, ତାହା ମଧ୍ୟ ସମସ୍ତଙ୍କୁ ଜଣା ନାହିଁ ।

୧୯୮୬ ରେ 'ଉତ୍କଳ ସମ୍ମିଳନୀ' ଏକ ପଞ୍ଜିକୃତ ଅନୁଷ୍ଠାନ ଭାବରେ ସରକାରଙ୍କର ୧୮୬୦ ରେଜିଷ୍ଟ୍ରେସନ୍ ଅଫ୍ ସୋସାଇଟିଜ୍ ଆକ୍ଟ ଦ୍ୱାରା ଏକ ନୂତନ ରୂପରେଖ ନେଲା ପରେ ମଧ୍ୟ ଉପଯୁକ୍ତ ଦଲିଲ୍‌କରଣ କାର୍ଯ୍ୟ ସମ୍ପନ୍ନ କରାଯାଇ ନାହିଁ ।

୧୯୯୫ ଜାନୁୟାରୀ ୮ ତାରିଖରେ ଉପରୋକ୍ତ ସାମ୍ବିଧାନିକ ନିୟମାବଳୀର ବ୍ୟବସ୍ଥା ଅନୁଯାୟୀ ଏ ଲେଖକ 'କୋଷାଧ୍ୟକ୍ଷ' ଭାବରେ ଦାୟିତ୍ୱ ଗ୍ରହଣ କରିଥିଲା । କିନ୍ତୁ ୪ ବର୍ଷର ଅଭିଜ୍ଞତାରୁ ଜଣାଗଲା ଯେ ପ୍ରାମାଣିକ କାଗଜପତ୍ର ରକ୍ଷା କରି ସମ୍ମିଳନୀର ଇତିହାସ ରଚନା କରିବା ପାଇଁ ବ୍ୟବସ୍ଥା ଗ୍ରହଣ କରିବା ସମ୍ଭବପର ହେଲା ନାହିଁ । ଏ ଦିଗରେ ମଧ୍ୟ କେତେକ ବାଦାନୁବାଦ ଖବରକାଗଜ ପୃଷ୍ଠାରେ ପ୍ରକାଶ ପାଇଲା । ଏପରିକି କୋର୍ଟ କଚେରୀରେ ଏ ସମ୍ପର୍କୀୟ ମକଦ୍ଦମା ଏବେ ବି ବିଚାରାଧୀନ ରହିଛି ।

ଏହି ପରିପ୍ରେକ୍ଷୀରେ 'ଉତ୍କଳ ସମ୍ମିଳନୀର ପ୍ରସ୍ତାବ ସମୂହ' (୮.୧.୧୯୯୫ –

୯.୮.୨୦୦୦)କୁ ଏକ ଦଲିଲ୍ ଭାବରେ ଉପସ୍ଥାପିତ କରିବା ଏ ଲେଖକର ଦାୟିତ୍ୱ ବୋଲି ବିଚାର କରି, ଏ ପୁସ୍ତକ ପ୍ରକାଶ କରାଯାଉଛି । ସୌଭାଗ୍ୟର କଥା ଯେ ପ୍ରତ୍ୟେକ ବୈଠକ ପରେ ଉତ୍କଳ ସମ୍ମିଳନୀର ସଚିବ ଡକ୍ଟର ଗୋପାଳକୃଷ୍ଣ ଶ୍ରୀଚନ୍ଦନ ବିବରଣୀ ପୁସ୍ତକରେ ଭାଷା ଦେଇ ସ୍ୱହସ୍ତରେ ଲିପିବଦ୍ଧ କରିଥିବା ପ୍ରସ୍ତାବାବଳୀର ନକଲ କାର୍ଯ୍ୟକାରୀ କମିଟିର ସଭ୍ୟମାନଙ୍କୁ ଯୋଗାଇ ଆସୁଥିଲେ । କିନ୍ତୁ ସେଗୁଡିକ ମୋର ଚିଠିପତ୍ର ଗଦା ଭିତରେ ବିକ୍ଷିପ୍ତ ଭାବରେ ପଡ଼ି ରହିଥିଲା । କେତେକର ନକଲ ମଧ୍ୟ ହଜିଯାଇଥିଲା । ସେ ସମୟର କେତେକ ସଭ୍ୟ/ସଭ୍ୟାଙ୍କ ପ୍ରଚେଷ୍ଟା ଫଳରେ ଏହାକୁ ସଂଗ୍ରହ କରି ଏକତ୍ର କରିବାରେ ଅନେକ ସମୟ ଓ ଅର୍ଥ ବ୍ୟୟ କରିବାକୁ ପଡ଼ିଛି । ସେମାନଙ୍କ ସହଯୋଗ ପାଇଁ କୃତଜ୍ଞତା ପ୍ରକାଶ କରୁଛି । ସମସ୍ତଙ୍କର ନାମ ଉଲ୍ଲେଖ କରିବାର ଆବଶ୍ୟକତା ଅନୁଭବ କରୁନାହିଁ । ଅନେକ ସେମାନଙ୍କର ନାମ ଉଲ୍ଲେଖ କରିବା ଚାହାନ୍ତି ନାହିଁ । ସେମାନଙ୍କର ପ୍ରଚେଷ୍ଟା ଫଳରେ ୮.୧.୧୯୯୫ ଠାରୁ ୩୧.୫.୨୦୦୦ ର ଏହି ପ୍ରସ୍ତାବ ସମୂହକୁ କେବଳ ଏକ ଦଲିଲ୍ ଭାବରେ ଓ ଏହା ଭବିଷ୍ୟତ ଇତିହାସ ରଚନାର ପ୍ରାଥମିକ ତଥ୍ୟ ଭାବରେ ଉପସ୍ଥାପନ କରାଯାଉଛି । ମନେ ହେଉଛି ଯେ ଏହି ତଥ୍ୟ ଭିତ୍ତିରେ ଅନ୍ୟମାନେ ସେମାନଙ୍କର ଅଭିଜ୍ଞତା ଆଦି ବ୍ୟାଖ୍ୟା କରିବାରେ ସମର୍ଥ ହେବେ । ଫଳରେ ମୌଖିକ ଇତିହାସ ଓ ମୁଦ୍ରିତ ପ୍ରମାଣର ଭିତ୍ତିରେ ଉତ୍କଳ ସମ୍ମିଳନୀର ଭବିଷ୍ୟତ ଇତିହାସକାରମାନେ ପୂର୍ଣ୍ଣାଙ୍ଗ ଇତିହାସ ରଚନା କରିବାକୁ ପ୍ରୋତ୍ସାହିତ ହେବେ । ଅନ୍ତତଃ ଉତ୍କଳ ସମ୍ମିଳନୀ ପଞ୍ଜିକୃତ ଅନୁଷ୍ଠାନ ହେବା ଦିନରୁ ୮.୧.୧୯୯୫ ପର୍ଯ୍ୟନ୍ତ ପ୍ରସ୍ତାବ ସମୂହ ମଧ୍ୟ ପ୍ରକାଶ ପାଇବା ଉଚିତ୍ ।

ଏହି ପୁସ୍ତକ ପ୍ରକାଶ କରିବା ଦିଗରେ କେତେକ ବନ୍ଧୁ ଆର୍ଥିକ ସାହାଯ୍ୟ କରିଛନ୍ତି । ସେମାନେ ହେଲେ ଡ଼ଃ କୈଳାସ ଚନ୍ଦ୍ର ଦାଶ, ମହାଭାବପ୍ରକାଶ ମହାପାତ୍ର, ଡ଼ଃ ସଦାନନ୍ଦ ଦୀକ୍ଷିତଃ, ଦେବେନ୍ଦ୍ର କୁମାର ଦାଶ, ବନଜବାସିନୀ ଦେବୀ, ଅଧ୍ୟାପକ ବିଶ୍ୱରଞ୍ଜନ, ବିକ୍ରମ କେଶରୀ ନାୟକ, ଗଗନେନ୍ଦ୍ର ନାଥ ଦାଶ, ବିରେନ୍ଦ୍ର ନାୟକ, ଧୀରେନ୍ଦ୍ର ନାଥ ଶତପଥୀ, ଜଗନ୍ନାଥ ମହାପାତ୍ର, ଓ ଅଧ୍ୟାପକ କୈଳାସ ଆଚାର୍ଯ୍ୟ । କିନ୍ତୁ ଏହି ସାହାଯ୍ୟ, ପୁସ୍ତକ ପ୍ରକାଶ କରିବା ପାଇଁ ଯଥେଷ୍ଟ ହୋଇପାରିଲା ନାହିଁ । ତେଣୁ ବାଧ୍ୟ ହୋଇ ଏହାର ସହଯୋଗ ରାଶି : ପ୍ରତି ଖଣ୍ଡ ୨୫ ଟଙ୍କା ରଖାଯାଇଛି । ଆଶା, ଉତ୍କଳ ସମ୍ମିଳନୀର ସଦସ୍ୟମାନେ ପ୍ରକାଶକଙ୍କଠାରୁ ଏହା କ୍ରୟକରି ମୁଦ୍ରଣ ଖର୍ଚ୍ଚ ପୂରଣକରିବା ଦିଗରେ ସହାୟକ ହେବେ । — ବନ୍ଦେ ଉତ୍କଳ ଜନନୀ

ଓଡ଼ିଶା ଦିବସ
୧ ଏପ୍ରିଲ୍ ୨୦୦୫, ଭୁବନେଶ୍ୱର

ଆଚାର୍ଯ୍ୟ ଭାବାନନ୍ଦ
ପ୍ରକାଶକ

## ୮.୧.୧୯୯୫ - ପ୍ରଥମ ଉତ୍କଳ ସମ୍ମିଳନୀ ପରିଷଦ ବୈଠକ
## ସ୍ଥାନ - ରୋଟାରୀ କ୍ଲବ ଗୃହ, ଭୁବନେଶ୍ୱର

ଉପସ୍ଥିତ ସଭ୍ୟ :

(୧) ଡକ୍ଟର ବିଶ୍ୱନାଥ କର, ସଂଗଠନ ସମ୍ପାଦକ ସିଂହଭୂମି ଉତ୍କଳ ସଭା, ସ୍ଥାନ/ପୋ: ଖରସୁଆଁ - ୮୩୩୨୧୬, ଜିଲ୍ଲା : ପଶ୍ଚିମ ସିଂହଭୂମି (ବିହାର) (୨) ଇ. ଅମରେନ୍ଦ୍ର କୁମାର ଦାସ, ସା/ପୋ: ଗଣ୍ଡିବେଡ, ଜି: ବାଲେଶ୍ୱର, ପିନ୍: ୭୫୬୦୪୭, ଫୋନ୍ (୦୬୭୮୮) ୪୫୨୭ (୩) ଗୋପୀନାଥ ସାହୁ, ସା : ନ୍ୟୁ କଲୋନୀ, ପୋ : ରାୟଗଡ, ଜି: ରାୟଗଡ, ଫୋନ୍ (୦୬୮୫୬) ୨୨୩୫୮ (୪) ଶ୍ରୀ ବିଶ୍ୱନାଥ ନାୟକ, ଏଡ୍‌ଭୋକେଟ, ଭଦ୍ରକ, ଫୋନ୍ (୦୬୭୯୪) ୫୨୫୨୬ (୫) ଡକ୍ଟର ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ଏନ୍/୩-୨୮୭, ଆଇ.ଆର.ସି. ଭିଲେଜ୍, ନୂଆପଲ୍ଲୀ, ଭୁବନେଶ୍ୱର - ୭୫୧୦୧୫, ଫୋନ୍ - ୫୪୪୩୧ (୬) ଦୀନବନ୍ଧୁ ହୋତା, ବଉଦ ବାବୁ ସାହି, ପୋ: ଚଉବରଇ, ଜି: ବୌଦ୍ଧ, ୭୬୨୦୧୪ (୭) ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଜୟପୁର (୮) ଅଭିରାମ ମହାପାତ୍ର, କୁଶଡ଼ିପା, ଖଲିକୋଟ (୯) ମନୋଜ କୁମାର ପାଢ଼ୀ, ବଡଖେମୁଣ୍ଡିସାହି, ବ୍ରହ୍ମପୁର (୧୦) ଦେବୀପ୍ରସାଦ ଚୌଧୁରୀ, ଆଡ୍‌ଭୋକେଟ୍, ସା: ଖେରସ, ପୋ/ଜି: ଜଗତ୍‌ସିଂହପୁର (୧୧) ପୁରୁଷୋତ୍ତମ ପ୍ରଧାନ, ସା/ପୋ: ଓଡିଶୋ, ଜି: ଜଗତ୍‌ସିଂହପୁର (୧୨) ବିପିନ ବିହାରୀ ରଥ, ସଭାପତି, ଓଡିଶା ଉଚ୍ଚତମ ନ୍ୟାୟାଳୟ, କଟକ-କନିକା ରୋଡ, କଟକ ୭୫୩୦୦୮, ଫୋନ୍ - ୬୦୧୨୮୪ (୧୩) ବିଚିତ୍ର କୁମାର ବଡଜେନା, ଖୋର୍ଦ୍ଧା (୧୪) ଗଣେଶ ପ୍ରସାଦ ପରିଜା, ଘର ନଂ-୭୭, ଟାଇପ- ୪, ଡେଲ୍ଟା କଲୋନୀ, ଭୁବନେଶ୍ୱର - ୧୨ (୧୫) ଡଃ ଦିଲ୍ଲୀପ ଶ୍ରୀଚନ୍ଦନ, ଅଧ୍ୟକ୍ଷ, ଶ୍ରୀଜଗନ୍ନାଥ କଲେଜ, କାଇପଦର, ଖୋର୍ଦ୍ଧା (୧୬) କୃଷ୍ଣ ପ୍ରସାଦ ମହାପାତ୍ର, ୬୧ ଫରେଷ୍ଟ ପାର୍କ, ଭୁବନେଶ୍ୱର - ୯, ଫୋନ୍ - ୪୦୩୯୭୧ (୧୭) ବସନ୍ତ କୁମାର ତ୍ରିପାଠୀ, ଜଗନ୍ନାଥ ରୋଡ, ମୀନାବଜାର, ପୋ/ଜି : ଢେଙ୍କାନାଳ, ଫୋନ୍ - ୪୦୮୮ (୧୮) ସାତକଡି ହୋତା (୧୯) ମନୋରମା ମହାପାତ୍ର (୨୦) ହରିହର ବାହିନୀପତି (୨୧) ଅଇଁଠୁ ସାହୁ (୨୨) ଲୋପାମୁଦ୍ରା ମହାନ୍ତି (୨୩) ସୌର୍ଯ୍ୟରଞ୍ଜନ ମଲ୍ଲିକ, ନିଆଳି, କଟକ ।

# ତା-୮-୧-୯୫ ରିଖରେ ଭୁବନେଶ୍ୱରଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ ପରିଷଦର ପ୍ରଥମ ବୈଠକ ବିବରଣୀ

ଆଜି ଭୁବନେଶ୍ୱର ରୋଟାରୀ ଭବନ୍‌ଠାରେ ନବ ଗଠିତ ଉତ୍କଳ ସମ୍ମିଳନୀ ପରିଷଦର ପ୍ରଥମ ବୈଠକ ଅନୁଷ୍ଠିତ ହୋଇଥିଲା । ଏଥିରେ ଅବସରପ୍ରାପ୍ତ ବିଚାରପତି ଶ୍ରୀ କୃଷ୍ଣପ୍ରସାଦ ମହାପାତ୍ର ଅଧକ୍ଷତା କରିଥିଲେ ଏବଂ ବିଭିନ୍ନ ଅଞ୍ଚଳରୁ ଆସିଥିବା ପରିଷଦର ସଭ୍ୟମାନେ ଅଂଶଗ୍ରହଣ କରିଥିଲେ ।

ପ୍ରଥମେ ସାଧାରଣ ସମ୍ପାଦକ ଉପସ୍ଥିତ ସଭ୍ୟମାନଙ୍କୁ ସ୍ୱାଗତ ଜଣାଇ ଗତ ଦୁଇବର୍ଷର ବିବରଣୀ ପ୍ରଦାନ ପୂର୍ବକ ସମ୍ମିଳନୀର ଲକ୍ଷ୍ୟ, ଉଦ୍ଦେଶ୍ୟ, ଆଭିମୁଖ୍ୟ ତଥା ଇତିମଧ୍ୟରେ ହାସଲ କରାଯାଇଥିବା ସଫଳତା ଏବଂ ଲକ୍ଷ୍ୟ ପୂରଣପାଇଁ ଭବିଷ୍ୟତର କାର୍ଯ୍ୟକ୍ରମ ସମ୍ପର୍କରେ ସବିଶେଷ ସୂଚନା ଦେଇଥିଲେ । ଆଲୋଚନାରେ ଅଂଶ ଗ୍ରହଣ କରି ସକ୍ରିୟ ସଙ୍ଗଠନର ଆବଶ୍ୟକତା ଏବଂ ଭାଷା ସଂସ୍କୃତିର ଐକ୍ୟ ତଥା ସୁରକ୍ଷା ଉପରେ ଉପସ୍ଥିତ ସଭ୍ୟମାନେ ଗୁରୁତ୍ୱ ଆରୋପ କରିଥିଲେ ।

ସଭ୍ୟ ଶ୍ରୀ ଶ୍ରୀରାମ ଦାସ (ଦିଲ୍ଲୀ) ଅଂଶ ଗ୍ରହଣ କରି ଦିଲ୍ଲୀରେ ଅବସ୍ଥିତ ଓଡିଆ ସ୍କୁଲ ଏବଂ ଓଡିଆ ବିଭାଗ ଥିବା ସ୍କୁଲଗୁଡିକୁ ପାଠ୍ୟପୁସ୍ତକ ଓ ଓଡିଆ ବହି ଯୋଗାଇ ଦେବା ନିମନ୍ତେ ଅନୁରୋଧ କରିଥିଲେ । ସାଧାରଣ ସମ୍ପାଦକ ସମ୍ମିଳନୀ ପାଖରେ ବଣ୍ଟନ ପାଇଁ ଥିବା ବହି ଯୋଗାଇ ଦେବା ପାଇଁ କହିଥିଲେ । ବିଚ୍ଛିନ୍ନାଞ୍ଚଳ ଓ ଓଡିଶା ବାହାରେ ଥିବା ସ୍କୁଲ ଏବଂ ଲାଇବ୍ରେରୀମାନଙ୍କୁ ବହି ଯୋଗାଇ ଦେବା ନିମନ୍ତେ ଓଡିଶା ସାହିତ୍ୟ ଏକାଡେମୀ ଓ ଗୋପବନ୍ଧୁ ସାହିତ୍ୟ ମନ୍ଦିରକୁ ଅନୁରୋଧ କରାଯିବାପାଇଁ ସ୍ଥିର ହେଲା ।

ଓଡ଼ିଆ ଭାଷାକୁ ସରକାରୀ ଭାଷା ରୂପେ ପ୍ରଚଳନ କରାଯିବା ସମ୍ପର୍କରେ ସମୀକ୍ଷା କରାଯାଇଥିଲା । ସଚିବାଳୟ ସ୍ତରରୁ ଅଧସ୍ତନ କାର୍ଯ୍ୟାଳୟ ଗୁଡିକୁ ଏବଂ ପାଞ୍ଚାୟତ, ପଞ୍ଚାୟତ ସମିତି, ପୌରସଂସ୍ଥା ପ୍ରଭୃତିରେ ଓଡିଆରେ ପତ୍ରାଳାପ ନ ହୋଇ ଇଂରାଜୀରେ ହେଉଥିବାର ସଭ୍ୟମାନେ ଉଲ୍ଲେଖ କରିଥିଲେ । ଏତଦ୍‌ବ୍ୟତୀତ ଇଂରାଜୀ ମାଧ୍ୟମ ପବ୍ଲିକ୍ ସ୍କୁଲ, ଇଂରାଜୀରେ ନିମନ୍ତ୍ରଣପତ୍ର, ନାମ ଫଳକ ଓ ବ୍ୟବସାୟ ସଂସ୍ଥାର ସାଇନ୍ ବୋର୍ଡ ଆଦିର ପ୍ରଚଳନ କ୍ରମେ କ୍ରମେ ବୃଦ୍ଧି ଲାଭ କରୁଥିବାରୁ ବୈଠକରେ ଉଦ୍‌ବେଗ ପ୍ରକାଶ କରାଯାଇଥିଲା । ଏହି କ୍ରମବର୍ଦ୍ଧମାନ ଧାରାର ପ୍ରତିରୋଧ ପାଇଁ ଏବଂ ଓଡିଆକୁ ସରକାରୀ ଭାଷା ରୂପେ ସବୁ ସ୍ତରରେ ପ୍ରଚଳନ ପାଇଁ ସଭ୍ୟମାନେ ଦାବି କରି ନିମ୍ନଲିଖିତ ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା ।

ପ୍ରସ୍ତାବ - ୧ : ପ୍ରତ୍ୟେକ ରାଜନୈତିକ ଦଳ ଆସନ୍ତା ଓଡିଶା ବିଧାନ ସଭା

ନିର୍ବାଚନ ଇସ୍ତାହାରରେ ଓଡିଆ ଭାଷାକୁ ପ୍ରଶାସନିକ ସ୍ତରରେ ବ୍ୟବହାର କରିବା ପାଇଁ ଅଙ୍ଗୀକାରବଦ୍ଧ ହେବେ । ନିର୍ବାଚିତ ସରକାର ଏହାକୁ ୧.୪.୯୫ (ଉତ୍କଳ ଦିବସ) ଠାରୁ କାର୍ଯ୍ୟକାରୀ କରିବେ ।

ଏହା ଯଦି କାର୍ଯ୍ୟକାରୀ ନ ହୁଏ, ତାହାହେଲେ ଓଡିଶାବାସୀଙ୍କ ତରଫରୁ ଉତ୍କଳ ସମ୍ମିଳନୀ ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମ ଗ୍ରହଣ କରିବାକୁ ବାଧ୍ୟ ହେବେ । ପ୍ରାକ୍ ପ୍ରସ୍ତୁତି ସ୍ୱରୂପ ଇତିମଧ୍ୟରେ ସମ୍ମିଳନୀ ତରଫରୁ ସଚେତନତା ସୃଷ୍ଟି ନିମନ୍ତେ ରାଜ୍ୟର ବିଭିନ୍ନ ସ୍ଥାନରେ ସଭା ସମିତି କରାଯିବ ।

ପ୍ରସ୍ତାବ - ୨ : ଉତ୍କଳ ସମ୍ମିଳନୀ ପାଇଁ କେନ୍ଦ୍ରୀୟ କାର୍ଯ୍ୟାଳୟର ଆବଶ୍ୟକତା ଦୃଷ୍ଟିରୁ ରାଜଧାନୀ ଭୁବନେଶ୍ୱରଠାରେ ଏକ ଗୃହ ଯୋଗାଇ ଦେବାକୁ ସରକାରଙ୍କୁ ପୁନରାୟ ଅନୁରୋଧ କରାଯିବ ।

ପ୍ରସ୍ତାବ - ୩ : ସମ୍ମିଳନୀର କାର୍ଯ୍ୟକୁ ସୁଚାରୁ ରୂପେ ଚଳାଇ ରଖିବା ପାଇଁ ନିଷ୍ଠାପର କର୍ମୀ ଆବଶ୍ୟକ । ସେହି ଦୃଷ୍ଟିରୁ ଖାଲି ଆଜୀବନ ସଭ୍ୟ ଚାନ୍ଦା ଦେବା ଛଡା ପ୍ରତ୍ୟେକ ଆଜୀବନ ସଭ୍ୟ ନିତାନ୍ତ ପକ୍ଷେ ଜଣେ ଆଜୀବନ ସଭ୍ୟ ଯୋଗାଡ କରିବାକୁ ଯତ୍ନବାନ୍ ହେବେ ।

ପ୍ରସ୍ତାବ - ୪ : ସମ୍ମିଳନୀର କାର୍ଯ୍ୟ ପରିସର ଓ ପରିସୀମା ୩ ଭାଗରେ (ଯଥା:- (କ) ଆଭ୍ୟନ୍ତରୀଣ, (ଖ) ଉପାନ୍ତ ଓ (ଗ) ବିଚ୍ଛିନ୍ନାଞ୍ଚଳ ଭାବେ) ବିଭକ୍ତ କରାଯାଇ ଆମର ଭାଷା, ସଂସ୍କୃତି ଓ ପରମ୍ପରାର କିପରି ସୁରକ୍ଷା, ପ୍ରସାର ଓ ଉନ୍ନତି ସାଧିତ ହୋଇ ପାରିବ ତାହାର ପୃଥକ୍ ପୃଥକ୍ ଭାବେ ବିଚାର କରାଯାଇ କର୍ମପନ୍ଥା ଗ୍ରହଣ କରାଯିବ ।

ଏହି ପରିପ୍ରେକ୍ଷୀରେ ୪ଟି ବିଚ୍ଛିନ୍ନାଞ୍ଚଳ ଅର୍ଥାତ୍ ଆନ୍ଧ୍ର ପ୍ରଦେଶ, ମଧ୍ୟ ପ୍ରଦେଶ, ବିହାର ଓ ପଶ୍ଚିମବଙ୍ଗରେ ଥିବା ଓଡିଆ ଭାଷାଭାଷୀ ଅଞ୍ଚଳରେ ପର୍ଯ୍ୟାୟକ୍ରମେ ବର୍ଷକୁ ଥରେ ସଭା କରିବାକୁ ହେବ ।

ପ୍ରସ୍ତାବ - ୫ : ଉତ୍କଳ ସମ୍ମିଳନୀର ଲକ୍ଷ୍ୟ, ଉଦ୍ଦେଶ୍ୟ ଏବଂ ଜାତି-ଦେଶ ଗଠନ ଲାଗି ଓଡିଆମାନଙ୍କଠାରେ ସ୍ୱାଭିମାନ ଏବଂ ନିଜତ୍ୱବୋଧ ଜାଗ୍ରତ କରିବା ପାଇଁ ଗଣମାଧ୍ୟମ ତଥା ସମ୍ବାଦପତ୍ରମାନଙ୍କର ଅତି ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିବାରୁ ଗଣମାଧ୍ୟମ ଓ ପତ୍ର ପତ୍ରିକା ସମ୍ପାଦକମାନଙ୍କୁ ଏହି ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ସମ୍ପାଦନ କରିବା ଲାଗି ଅନୁରୋଧ କରାଗଲା । ନିକଟରେ ସମସ୍ତ ପତ୍ର ପତ୍ରିକା ସମ୍ପାଦକମାନଙ୍କର ଏକ ବୈଠକ ଆହୂତ କରାଇବା ଲାଗି ମଧ୍ୟ ନିଷ୍ପତ୍ତି ଗ୍ରହଣ କରାଗଲା । ଉତ୍କଳ ସମ୍ମିଳନୀ ସମ୍ପର୍କୀୟ ସମ୍ବାଦ ପତ୍ର ପତ୍ରିକାର ପ୍ରଥମ ପୃଷ୍ଠାରେ ପ୍ରକାଶ କରିବା ପାଇଁ ଅନୁରୋଧ କରାଗଲା । ବୈଠକରେ ଆଗାମୀ ତିନି ବର୍ଷ ପାଇଁ ଉତ୍କଳ ସମ୍ମିଳନୀର କାର୍ଯ୍ୟକାରୀ ସମିତି ଓ ବିଭିନ୍ନ ଉପସମିତିମାନ ଗଠନ କରାଯାଇଥିଲା । ଏଥିରେ ସର୍ବସମ୍ମତିକ୍ରମେ ନିମ୍ନ ପ୍ରକାର କର୍ମକର୍ତ୍ତା ନିର୍ବାଚିତ ହୋଇଥିଲେ ।

କାର୍ଯ୍ୟକାରୀ ସମିତି : ସଭାପତି - ଡକ୍ଟର ରାଧାନାଥ ରଥ, ଉପସଭାପତି - (୧) ବିଚାରପତି କୃଷ୍ଣପ୍ରସାଦ ମହାପାତ୍ର (୨) ହରିଶ୍ଚନ୍ଦ୍ର ବକ୍ସିପାତ୍ର (୩) ମୁକୁନ୍ଦରାମ ତନ୍ତୀ ।

ସାଧାରଣ ସମ୍ପାଦକ : ମହାସଚିବ - ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ, ସଚିବ - (୧) ଡକ୍ଟର ଗୋପାଳକୃଷ୍ଣ ଶ୍ରୀଚନ୍ଦନ (୨) ଡାକ୍ତର ଦୀନେଶ ଷଡଙ୍ଗୀ (୩) ଶ୍ରୀ କୃଷ୍ଣଚନ୍ଦ୍ର ପଣ୍ଡା (୪) ଶ୍ରୀମତୀ ଲୋପାମୁଦ୍ରା ମହାନ୍ତି (୫) ଶ୍ରୀ ଅମରେଶ ପ୍ରସାଦ ମିଶ୍ର ।

କୋଷାଧ୍ୟକ୍ଷ : ଡକ୍ଟର ଭାବଗ୍ରାହୀ ମିଶ୍ର ।

କାର୍ଯ୍ୟକାରୀ ସମିତି ସଭ୍ୟ : (୧) ଶ୍ରୀମତୀ ମନୋରମା ମହାପାତ୍ର (୨) ବିପିନ ବିହାରୀ ରଥ (୩) ଆନନ୍ଦ କୁମାର ପାଣି (୪) ହରିହର ବାହିନୀପତି (୫) ଅଇଁଠୁ ସାହୁ (୬) ସାତକଡି ହୋତା (୭) ପ୍ରକାଶ ଚନ୍ଦ୍ର ପାଢ଼ୀ (୮) ବିଚିତ୍ରାନନ୍ଦ ସାହୁ (୯) ପରେଶ ଦାନୀ (୧୦) ଜୟନ୍ତ ବେହେରା (୧୧) ଗୋପୀନାଥ ସାହୁ (୧୨) ଅମରେନ୍ଦ୍ର କୁମାର ଦାସ (୧୩) କୁମୁଦଚନ୍ଦ୍ର ମଲ୍ଲିକ (୧୪) ବସନ୍ତ କୁମାର ତ୍ରିପାଠୀ (୧୫) ଡଃ ବିଶ୍ୱନାଥ କର (୧୬) ଶ୍ରୀରାମ ଦାସ (୧୭) ଅନନ୍ତରାମ ମହାପାତ୍ର (୧୮) ଡକ୍ଟର ହାଡିବନ୍ଧୁ ମିର୍ଦ୍ଧା (୧୯) ଛୟଦେବ ପଣ୍ଡା ।

ସ୍ୱତନ୍ତ୍ର ନିମନ୍ତ୍ରିତ ବ୍ୟକ୍ତି : (୧) ସର୍ବଶ୍ରୀ ବିଜୟ କୁମାର ପାଣି (୨) ବ୍ରଜକିଶୋର ତ୍ରିପାଠୀ, ଏମ୍.ପି. (୩) ବିଶ୍ୱନାଥ ନାୟକ (୪) ସୀମାଦ୍ରି ମିଶ୍ର (୫) ଗଣେଶ ପ୍ରସାଦ ପରିଜା (୬) ଅଭିରାମ ମହାପାତ୍ର (୭) ଦେବୀ ପ୍ରସାଦ ଚୌଧୁରୀ (୮) ଦୀନବନ୍ଧୁ ହୋତା (୯) ଲକ୍ଷ୍ମୀନାରାୟଣ ଦାସ ।

ଉପସମିତି : (କ) (ଉତ୍କଳ ସମ୍ମିଳନୀ : ଲକ୍ଷ୍ୟ, ଉଦ୍ଦେଶ୍ୟ ଓ ସ୍ୱାଭିମାନ) ପ୍ରଚାର ଉପସମିତି : ୧. ଅଧ୍ୟକ୍ଷା -ଶ୍ରୀମତୀ ମନୋରମା ମହାପାତ୍ର (୪ ଜଣ ସଭ୍ୟ ନିଆଯିବେ) (ଖ) ଅର୍ଥ ଉପସମିତି : ୧. ଅଧ୍ୟକ୍ଷ - ଶ୍ରୀ ସାତକଡି ହୋତା, ୨. ସଭ୍ୟ - ଡକ୍ଟର ଭାବଗ୍ରାହୀ ମିଶ୍ର, (ଗ) ସାମ୍ବିଧାନିକ (ସଂଶୋଧନ) ଉପସମିତି : ୧. ଅଧ୍ୟକ୍ଷ - ବିଚାରପତି ଶ୍ରୀ କୃଷ୍ଣପ୍ରସାଦ ମହାପାତ୍ର, ୨. ସଭ୍ୟ - ଶ୍ରୀ ବିପିନ ବିହାରୀ ରଥ, ବରିଷ୍ଠ ଏଡ୍‌ଭୋକେଟ୍ (କଟକ), (ଘ) ଓଡିଶା ବିକାଶ ବ୍ୟାପାର ଉପସମିତି ୫. ବିଚ୍ଛିନ୍ନାଞ୍ଚଳ ଓଡିଆ ଭାଷା-ସଂସ୍କୃତି-ସୁରକ୍ଷା ଉପସମିତି, ଓ (ଙ) ଅନୁଦାନ ଉପସମିତି ଗୁଡିକ ଆଗାମୀ କାର୍ଯ୍ୟକାରୀ ସମିତି ବୈଠକରେ ଗଠିତ ହେବା ସ୍ଥିର ହେଲା । ନବଗଠିତ କାର୍ଯ୍ୟକାରୀ ସମିତିର ପ୍ରଥମ ବୈଠକ କଲିକତାଠାରେ ମାର୍ଚ୍ଚ ୨୦, ୧୯୯୫ ରେ ଅନୁଷ୍ଠିତ ହେବା ପାଇଁ ପ୍ରସ୍ତାବିତ ସମ୍ମିଳନୀ ସମୟରେ ବସିବା ପାଇଁ ସ୍ଥିର ହେଲା ।

ସଭାପତିଙ୍କୁ ଧନ୍ୟବାଦ ଜ୍ଞାପନ ପୂର୍ବକ ସଭା ସାଙ୍ଗ ହେଲା ।

ବସନ୍ତ କୁମାର ପାଣିଗ୍ରାହୀ　　　　କୃଷ୍ଣପ୍ରସାଦ ମହାପାତ୍ର, (ସଭାପତି)

ଏହାର ନକଲ ସଂପୃକ୍ତ ସମସ୍ତଙ୍କର ସଦୟ ଅବଗତି ଓ ବିହିତ କାର୍ଯ୍ୟାନୁଷ୍ଠାନ ପାଇଁ ପଠାଗଲା ।

ଗୋପାଳକୃଷ୍ଣ ଶ୍ରୀଚନ୍ଦନ

ତା-୧୧-୧-୯୫ ଯୁଗ୍ମ ସଚିବ

## ତା-୧୨-୨-୯୫ ରିଖରେ ଭୁବନେଶ୍ୱରଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର କାର୍ଯ୍ୟକାରୀ ବୈଠକ ବିବରଣୀ

ଉପସ୍ଥିତ ସଭ୍ୟ :

(୧) କୃଷ୍ଣପ୍ରସାଦ ମହାପାତ୍ର (୨) ବସନ୍ତ କୁମାର ପାଣିଗ୍ରାହୀ (୩) ଜୟଦେବ ପଣ୍ଡା (୪) ଭାବଗ୍ରାହୀ ମିଶ୍ର (୫) ଅମରେନ୍ଦ୍ର କୁମାର ଦାସ (୬) ଗୋପଲକୃଷ୍ଣ ଶ୍ରୀଚନ୍ଦନ (୭) ବିପିନ ବିହାରୀ ରଥ (୮) ସାତକଡି ହୋତା (୯) ଲୋପାମୁଦ୍ରା ହୋତା (୧୦) ଅମରେଶ ପ୍ରସାଦ ମିଶ୍ର

ଉପସଭାପତି ବିଚାରପତି ଶ୍ରୀ କୃଷ୍ଣ ପ୍ରସାଦ ମହାପାତ୍ରଙ୍କ ସଭାପତିତ୍ୱରେ ବୈଠକ ଅନୁଷ୍ଠିତ ହୋଇଥିଲା ।

ଗତ ୮-୧-୯୫ ରେ ଅନୁଷ୍ଠିତ ସମ୍ମିଳନୀର ସାଧାରଣ ପରିଷଦ ପ୍ରଥମ ବୈଠକରେ ଗୃହୀତ ପ୍ରସ୍ତାବ-୧ ଅର୍ଥାତ୍ ପ୍ରତ୍ୟେକ ରାଜନୈତିକ ଦଳ ଆସନ୍ତା ଓଡିଶା ବିଧାନ ସଭା ନିର୍ବାଚନ ଇସ୍ତାହାରରେ ଓଡିଆ ଭାଷାକୁ ପ୍ରଶାସନିକ ସବୁ ସ୍ତରରେ ବ୍ୟବହାର କରିବା ପାଇଁ ଅଙ୍ଗୀକାରବଦ୍ଧ ହେବା ସମ୍ପର୍କରେ ଆଲୋଚନା କରାଯାଇଥିଲା । ସାଧାରଣ ସମ୍ପାଦକ ଜଣାଇଥିଲେ ଯେ ରାଜ୍ୟର ସମସ୍ତ ମୁଖ୍ୟ ରାଜନୈତିକ ଦଳଙ୍କୁ ଏହା ପ୍ରସ୍ତାବ ସମ୍ପର୍କରେ ଅବହିତ କରାଯାଇ ପତ୍ର ଲେଖାଯାଇଛି । ସେମାନଙ୍କ ମଧ୍ୟରୁ ଦୁଇଟି ରାଜନୈତିକ ଦଳ ଲିଖିତ ଭାବେ ସେମାନଙ୍କର ପ୍ରତିଶ୍ରୁତି ପ୍ରଦାନ କରିଛନ୍ତି । ଅନ୍ୟ ରାଜନୈତିକ ଦଳମାନେ ଅନୁରୂପ ପଦକ୍ଷେପ ନେବେ ବୋଲି କାର୍ଯ୍ୟକାରୀ ସମିତିର ଉପସ୍ଥିତ ସଭ୍ୟମାନେ ଆଶା ପ୍ରକାଶ କରିଥିଲେ । ଏ ବିଷୟରେ ପରବର୍ତ୍ତୀ ପଦକ୍ଷେପ ନେବା ପାଇଁ ସାଧାରଣ ସମ୍ପାଦକ ପ୍ରକାଶ କରିଥିଲେ ।

୨- ପ୍ରସ୍ତାବିତ କଲିକତା ସମ୍ମିଳନୀ ସମ୍ପର୍କରେ ଆଲୋଚନା କରାଯାଇ ସ୍ଥିର ହେଲା, ମାର୍ଚ୍ଚ ୧୯ ଓ ୨୦ ରେ ଅନୁଷ୍ଠିତ ଏହି ଅଧିବେଶନରେ ୩୦ ଜଣ ଯାକ କାର୍ଯ୍ୟକାରୀ ସମିତି ସଭ୍ୟ ନିଶ୍ଚିତ ଭାବେ ଯେପରି ଯୋଗ ଦିଅନ୍ତି, ତାହାର ବିହିତ ବ୍ୟବସ୍ଥା ହେବ । କଟକ ଓ ଭୁବନେଶ୍ୱରରୁ ଯେଉଁ ସଭ୍ୟମାନେ ଏହି ଅଧିବେଶନରେ ଯୋଗ ଦେବେ, ସେମାନଙ୍କର

ଯିବା ବ୍ୟବସ୍ଥା କରିବା ପାଇଁ ଭୁବନେଶ୍ୱରରେ ଅବସ୍ଥାପିତ ଯୁଗ୍ମ ସମ୍ପାଦକ ସଂଯୋଜକ ରୂପେ କାର୍ଯ୍ୟ କରିବେ । ଆସନ୍ତା କାର୍ଯ୍ୟକାରୀ ସମିତି କଲିକତା ଅଧିବେଶନ ସମୟରେ ମଧ୍ୟ ଅନୁଷ୍ଠିତ ହୋଇ ଚଳିତ ବର୍ଷ ପାଇଁ ଅନ୍ୟାନ୍ୟ କାର୍ଯ୍ୟକ୍ରମ ତଥା ଅବଶିଷ୍ଟ ଉପସମିତି ଗଠନ ସମ୍ପର୍କରେ ବିଚାର କରିବା ପାଇଁ ସ୍ଥିର ହେଲା ।

୩- ଆଗାମୀ ରାଜ୍ୟ ବିଧାନ ସଭା ନିର୍ବାଚନ ଶେଷ ହୋଇ ନବ ନିର୍ବାଚିତ ବିଧାୟକମାନଙ୍କ ଶପଥ ଗ୍ରହଣ ପରେ ଭୁବନେଶ୍ୱରଠାରେ ସମ୍ମିଳନୀ ତରଫରୁ ସେମାନଙ୍କୁ ଏକ ବୈଠକରେ ଭେଟି ଓଡିଆ ଭାଷାକୁ ସରକାରୀ ଭାଷା ରୂପେ ତୁରନ୍ତ ସବୁ ସ୍ତରରେ ପ୍ରଚଳନ ପାଇଁ ନିବେଦନ କରାଯିବା ପାଇଁ ସ୍ଥିର ହେଲା । ଉକ୍ତ ବୈଠକରେ ମାନ୍ୟବର ବିଧାୟକମାନଙ୍କ ସହ ସମ୍ମିଳନୀର ଅନ୍ୟାନ୍ୟ କାର୍ଯ୍ୟକ୍ରମ ଗୁଡିକର ତ୍ୱରାନ୍ୱିତ କାର୍ଯ୍ୟକାରିତା ସମ୍ପର୍କରେ ମଧ୍ୟ ଆଲୋଚନା କରାଯିବ ।

୪- ଆସନ୍ତା ଅପ୍ରେଲ୍ ପହିଲା ଓଡିଶା ପ୍ରଦେଶ ଗଠନର ହୀରକ ଜୟନ୍ତୀ ଅବସରରେ ରାଜଧାନୀ ଭୁବନେଶ୍ୱରରେ ଏହା ଯଥୋଚିତ ଭାବେ ପାଳନ କରାଯିବା ପାଇଁ ସ୍ଥିର ହେଲା । ପ୍ରତି ଜିଲ୍ଲା ସଦର ମହକୁମାରେ ମଧ୍ୟ ତଦୁପଲକ୍ଷେ ଅନୁଷ୍ଠିତ ସରକାରୀ କାର୍ଯ୍ୟକ୍ରମ ସହ ସାମିଲ ହୋଇ ପାଳନ କରିବା ପାଇଁ ନିଷ୍ପତ୍ତି ନିଆଗଲା ।

ଉକ୍ତ ଦିନ ରାଜଧାନୀ ଭୁବନେଶ୍ୱରଠାରେ ଲେଖକ, କଳାକାର, ବୁଦ୍ଧିଜୀବିମାନଙ୍କର ସମାବେଶ ଅନୁଷ୍ଠିତ ହୋଇ ଓଡିଆ ସ୍ୱାଭିମାନ ଓ ମମତ୍ୱବୋଧ ସାଧାରଣଙ୍କ ମଧ୍ୟରେ ଜାଗ୍ରତ କରିବା ପାଇଁ ଉଦ୍ୟମ କରାଯିବ । ଏହି ସମାବେଶକୁ ସଫଳ କରିବା ପାଇଁ ସମସ୍ତ ଆଜୀବନ ସଭ୍ୟଙ୍କୁ ନିମନ୍ତ୍ରଣ କରାଯିବ । ଏଥିପାଇଁ ଏକ ପ୍ରସ୍ତୁତି ସମିତି ନିମ୍ନଲିଖିତ ସଭ୍ୟମାନଙ୍କୁ ନେଇ ଗଠିତ ହେଲା ।

୧- ଜଷ୍ଟିସ୍ କୃଷ୍ଣପ୍ରସାଦ ମହାପାତ୍ର, ୨- ଡକ୍ଟର ଭାବଗ୍ରାହୀ ମିଶ୍ର, ୩- ଶ୍ରୀ ଜୟଦେବ ପଣ୍ଡା, ୪- ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର, ୫- ଶ୍ରୀ ସାତକଡି ହୋତା, ୬- ଶ୍ରୀ ଗଣେଶ ପ୍ରସାଦ ପରିଜା, ୭- ଶ୍ରୀମତୀ ଲୋପାମୁଦ୍ରା ମହାନ୍ତି, ୮- ଡକ୍ଟର ଗୋପାଳକୃଷ୍ଣ ଶ୍ରୀଚନ୍ଦନ ।

୫- ଅର୍ଥ ଉପସମିତି ସଦସ୍ୟ ତଥା କୋଷାଧ୍ୟକ୍ଷ ଡକ୍ଟର ଭାବଗ୍ରାହୀ ମିଶ୍ର ସମ୍ମିଳନୀର ପାଣ୍ଠି ସଂଗ୍ରହ ସମ୍ପର୍କରେ ଆଲୋଚନା ଆରମ୍ଭ କରି ପ୍ରସ୍ତାବ ଦେଲେ ଯେ, ପ୍ରତ୍ୟେକ ଆଜୀବନ ସଭ୍ୟ/ କାର୍ଯ୍ୟକାରୀ ସମିତି ସଭ୍ୟ ଆଉ ଦଶ ଜଣ କରି ଆଜୀବନ ସଭ୍ୟ ସଂଗ୍ରହ କରିବେ । ଏହା ସର୍ବସମ୍ମତି କ୍ରମେ ଗୃହୀତ ହୋଇଥିଲା ।

ଏତଦ୍‌ବ୍ୟତୀତ ପ୍ରତି ମାସରେ ଏକାଦିକ୍ରମେ ୩ ବର୍ଷ, ୫ ବର୍ଷ ଏବଂ ଆଜୀବନ ସମ୍ମିଳନୀ ପାଣ୍ଠିକୁ ନିର୍ଦ୍ଦିଷ୍ଟ ଅର୍ଥ ପ୍ରଦାନ କରିବା ପାଇଁ ଆଗ୍ରହୀ ସଦାଶୟ ବ୍ୟକ୍ତିଙ୍କଠାରୁ ଅର୍ଥ ସଂଗ୍ରହ କରାଯିବ । ଏଥିପାଇଁ ସର୍ବନିମ୍ନ ୧୦ ଟଙ୍କା ଆଦାୟ କରିବା ପାଇଁ ସ୍ଥିର ହେଲା । ଏ ସମସ୍ତ ଅର୍ଥ କୋଷାଧ୍ୟକ୍ଷ ସଂଗ୍ରହ କରିବେ ବୋଲି ନିଷ୍ପତ୍ତି ନିଆଗଲା ।

୬- ସମ୍ମିଳନୀର ପାଣ୍ଠି ଜମା ଏବଂ ଉଠାଣ ସମ୍ପର୍କରେ ଆଲୋଚନା କରାଯାଇ ସ୍ଥିର ହେଲା ଭୁବନେଶ୍ୱରରେ ଅବସ୍ଥିତ ରାଜ୍ୟ ସମବାୟ ବ୍ୟାଙ୍କର ମୁଖ୍ୟ ଶାଖାରେ ଏକ ଯୁଗ୍ମ ହିସାବ ଖୋଲାଯିବ । ଏଥିରୁ କୋଷାଧ୍ୟକ୍ଷ ଏବଂ ମହାସଚିବ (ସାଧାରଣ ସମ୍ପାଦକ)/ କିମ୍ବା ଭୁବନେଶ୍ୱରରେ ଅବସ୍ଥାପିତ ସଚିବ (ସମ୍ପାଦକ) ଙ୍କ ଯୁଗ୍ମ ସ୍ୱାକ୍ଷରରେ ଅର୍ଥ ଉଠାଯାଇ ପାରିବ । ଏହା ସର୍ବସମ୍ମତିକ୍ରମେ ଗୃହୀତ ହେଲା ।

୭- ସେପ୍ଟେମ୍ବର-ଅକ୍ଟୋବର ବେଳକୁ ରାଉରକେଲାଠାରେ ଏକ ସାଧାରଣ ଅଧିବେଶନ ଅନୁଷ୍ଠିତ ହେବା ପାଇଁ ସ୍ଥିର ହେଲା ।

୮- କାର୍ଯ୍ୟକାରୀ ସମିତି ସଭ୍ୟ ଶ୍ରୀ ଅମରେନ୍ଦ୍ର କୁମାର ଦାସ ପ୍ରସ୍ତାବ ଦେଲେ ଯେ ଓଡିଶାର ଅନେକ ବରପୁତ୍ରମାନଙ୍କର ସ୍ମୃତି ରକ୍ଷା ପାଇଁ ଏ ପର୍ଯ୍ୟନ୍ତ ଯଥାଯୋଗ୍ୟ ପଦକ୍ଷେପ ନିଆଯାଇ ନାହିଁ । ସେମାନଙ୍କ ନାମରେ ବିଭିନ୍ନ ରାସ୍ତାକୁ ନାମିତ କରି ସ୍ମୃତି ରକ୍ଷା ନିମନ୍ତେ ସରକାର ତଥା ପୌର କର୍ତ୍ତୃପକ୍ଷମାନଙ୍କୁ ଅନୁରୋଧ କରିବା ପାଇଁ ସ୍ଥିର ହେଲା । ଏହାର ଏକ ତାଲିକା ପ୍ରସ୍ତୁତ କରିବା ନିମନ୍ତେ ନିଷ୍ପତ୍ତି ନିଆଗଲା ।

ପରିଶେଷରେ ସଭାପତିଙ୍କୁ ଧନ୍ୟବାଦ ଅର୍ପଣ କରାଯାଇ ସଭା ସାଙ୍ଗ ହେଲା ।

(କୃଷ୍ଣ ପ୍ରସାଦ ମହାପାତ୍ର)

## ତା-୨୫-୩-୯୫ ରିଖରେ ଗୋପବନ୍ଧୁଭବନ, କଟକଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର କାର୍ଯ୍ୟକାରୀ ବୈଠକ ବିବରଣୀ

ଉପସ୍ଥିତ ସଭ୍ୟ :

(୧) ଡକ୍ଟର ରାଧାନାଥ ରଥ, ସଭାପତି (୨) ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ, ସାଧାରଣ ସମ୍ପାଦକ (୩) ଶ୍ରୀ ସାତକଡି ହୋତା, ସଭ୍ୟ (୪) ଶ୍ରୀ ବିପିନ ବିହାରୀ ରଥ, ସଭ୍ୟ (୫) ଶ୍ରୀମତୀ ମନୋରମା ମହାପାତ୍ର, ସଭ୍ୟ (୬) ଶ୍ରୀ କିଶୋର ଚନ୍ଦ୍ର ତ୍ରିପାଠୀ, ସଭ୍ୟ (୭) ଶ୍ରୀ ନାରାୟଣ ଚନ୍ଦ୍ର ବେହେରା, ସଭ୍ୟ (୮) ଶ୍ରୀ ବଳରାମ ମହାନ୍ତି, ଆଜୀବନ ସଭ୍ୟ (୯) ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ସମ୍ପାଦକ ।

ସ୍ଥାୟୀ ସଭାପତି ଡକ୍ଟର ରାଧାନାଥ ରଥଙ୍କ ସଭାପତିତ୍ୱରେ ଆଜି କାର୍ଯ୍ୟକାରୀ ସମିତିର ବୈଠକ ଅନୁଷ୍ଠିତ ହୋଇଥିଲା ।

ଅପ୍ରେଲ ୨୪ ଓ ୨୫ ଦୁଇ ଦିନ ଧରି କଲିକତାଠାରେ ଅନୁଷ୍ଠିତ ହେବାକୁ ଥିବା ସମ୍ମିଳନୀ ବୈଠକ ଉପରେ ବିଶଦ ଆଲୋଚନା ହୋଇଥିଲା । ଏଥିପାଇଁ ଗଠିତ ଅଭ୍ୟର୍ଥନା

ସମିତିର ସମ୍ପାଦକ ଶ୍ରୀ ନାରାୟଣ ଚନ୍ଦ୍ର ବେହେରା ଏ ପର୍ଯ୍ୟନ୍ତ ଯାହା ଯାହା ଅଗ୍ରଗତି କରାଯାଇଛି, ତାହାର ବିବରଣୀ ପ୍ରଦାନ କରିଥିଲେ ।

ଉତ୍କଳ ସମ୍ମିଳନୀ ସଭାପତି ଡ଼କ୍ଟର ରଥ ନିଜେ ଉପସ୍ଥିତ ରହି ଏହି ସମ୍ମିଳନୀର ଉଦ୍‌ଘାଟନ ତତ୍ତ୍ୱାବଧାନ କରିବେ ବୋଲି ସ୍ଥିର ହେଲା । ଅତିଥି ଭାବେ ନିମ୍ନଲିଖିତ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ କରିବା ପାଇଁ ମଧ୍ଯ ସ୍ଥିର ହେଲା ।

(୧) ଓଡିଶାର ମୁଖ୍ୟମନ୍ତ୍ରୀ, (୨) ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ, (୩) ଓଡିଶାର ଉପ ମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ, (୪) କେନ୍ଦ୍ର ସୂଚନା ଓ ସଂପ୍ରସାରଣ ବିଭାଗ ମନ୍ତ୍ରୀ ଶ୍ରୀ କାମାକ୍ଷା ପ୍ରସାଦ ସିଂହଦେବ, ଏବଂ ଦୁଇ ରାଜ୍ୟର ଗଣ ଶିକ୍ଷା ମନ୍ତ୍ରୀ, (୫) ଓଡିଶାର ସଂସ୍କୃତି ମନ୍ତ୍ରୀ ଶ୍ରୀ ଭୂପେନ୍ଦ୍ର ସିଂହ, (୬) ଏତଦ୍ ବ୍ୟତୀତ ଉଭୟ ରାଜ୍ୟର ବିରୋଧୀଦଳର ନେତା ଦ୍ୱୟଙ୍କୁ ମଧ୍ୟ ନିମନ୍ତ୍ରଣ କରାଯିବା ପାଇଁ ନିଷ୍ପତ୍ତି ନିଆଗଲା ।

ପ୍ରଥମ ଦିନ (୨୪-୪-୯୫) ଉତ୍କଳଭବନରେ ସକାଳ ୯ଟାରେ ଏକ କର୍ମୀ ସମ୍ମିଳନୀ ହେବାର ସ୍ଥିର ହେଲା ।

ଏହି ଉପଲକ୍ଷେ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରିବା ପାଇଁ ଓଡିଶା ସଂସ୍କୃତି ବିଭାଗକୁ ଅନୁରୋଧ କରାଯିବା ପାଇଁ ନିଷ୍ପତ୍ତି ନିଆଗଲା ।

କଲିକତାରେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କର ପ୍ରତିମୂର୍ତ୍ତି ସ୍ଥାପନ ପାଇଁ ପଶ୍ଚିମବଙ୍ଗ ସରକାରଙ୍କ ସହ ଯୋଗାଯୋଗକରି ଆଲୋଚନାହେବା ନିମନ୍ତେ ସ୍ଥିର ହେଲା ।

ଆସନ୍ତା ଅପ୍ରେଲ ୧୬ ତାରିଖରେ ନିମ୍ନଲିଖିତ ସଭ୍ୟମାନେ ଅଗ୍ରୀମ କଲିକତା ଯାଇ ଅଧିବେଶନ ପ୍ରସ୍ତୁତି ସମ୍ପର୍କରେ ତତ୍ତ୍ୱାବଧାନ କରିବେ ବୋଲି ନିଷ୍ପତ୍ତି ନିଆଗଲା ।

୧- ଶ୍ରୀମତୀ ମନୋରମା ମହାପାତ୍ର, ୨- ଶ୍ରୀ ସାତକଡି ହୋତା,

୩- ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ

ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନର ହୀରକ ଜୟନ୍ତୀ ଅପ୍ରେଲ ପହିଲା ଦିନ କଟକରେ ଶ୍ରୀରାମଚନ୍ଦ୍ର ଭବନଠାରେ ପାଳନ ପାଇଁ ସ୍ଥିର ହେଲା । ସେଠାରେ ସୁବିଧା ନ ହେଲେ ଭୁବନେଶ୍ୱରରେ ପାଳନ କରାଯିବ ।

ପରିଶେଷରେ ସଭାପତିଙ୍କୁ ଧନ୍ୟବାଦ ଅର୍ପଣ କରାଯାଇ ସଭା ସାଙ୍ଗ ହେଲା ।

| | | |
|---|---|---|
| ଗୋପାଳକୃଷ୍ଣ ଶ୍ରୀଚନ୍ଦନ | ବସନ୍ତ କୁମାର ପାଣିଗ୍ରାହୀ | ରାଧାନାଥ ରଥ |
| (ସଚିବ) | (ମହାସଚିବ) | (ସଭାପତି) |

## ତା-୨୬-୩-୯୫ ରିଖରେ ସଭ୍ୟ ଶ୍ରୀ ସାତକଡି ହୋତାଙ୍କ ବାସଭବନ, ଭୁବନେଶ୍ୱରଠାରେ ଅନୁଷ୍ଠିତ ସ୍ୱତନ୍ତ୍ର ବୈଠକ ବିବରଣୀ

ଉପସ୍ଥିତ ସଭ୍ୟ :

(୧) ଜଷ୍ଟିସ ଶ୍ରୀକୃଷ୍ଣ ପ୍ରସାଦ ମହାପାତ୍ର, ଉପସଭାପତି (୨) ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ, ସାଧାରଣ ସମ୍ପାଦକ (୩) ଶ୍ରୀ ସାତକଡି ହୋତା, ସଭ୍ୟ (୪) ଶ୍ରୀ ସୁରେନ୍ଦ୍ର ମୋହନ ପଣ୍ଡା (୫) ଶ୍ରୀ ବଳରାମ ମହାନ୍ତି (୬) ଶ୍ରୀ ଗଣେଶ ପ୍ରସାଦ ପରିଜା (୭) ଶ୍ରୀ ସୁଦର୍ଶନ ନାୟକ (୮) ଶ୍ରୀ ନାରାୟଣ ଚନ୍ଦ୍ର ବେହେରା (୯) ଡ଼ଃ ଗୋପାଳକୃଷ୍ଣ ଶ୍ରୀଚନ୍ଦନ (୧୦) ଶ୍ରୀ ଜୟଦେବ ପଣ୍ଡା (୧୧) ଶ୍ରୀ କୈଳାସ ଆଚାର୍ଯ୍ୟ (୧୨) ଡ଼: ଭାବାଗ୍ରାହୀ ମିଶ୍ର ।

ଜଷ୍ଟିସ ଶ୍ରୀକୃଷ୍ଣ ପ୍ରସାଦ ମହାପାତ୍ର, ଉପସଭାପତିଙ୍କ ସଭାପତିତ୍ୱରେ ବୈଠକ ଆରମ୍ଭ ହୋଇ ଅପ୍ରେଲ ପହିଲା ଦିନ ଉତ୍କଳ ସମ୍ମିଳନୀର ହୀରକ ଜୟନ୍ତୀ ଉଦ୍‌ଘାଟନୀ ଉତ୍ସବ ପାଳନ ସମ୍ପର୍କରେ କାର୍ଯ୍ୟକ୍ରମ ସ୍ଥିର ହେଲା ।

ସ୍ୱତନ୍ତ୍ର ଓଡିଶା ଦିବସ (ଅପ୍ରେଲ୍ ପହିଲା, ୧୯୯୫) ପୂର୍ବାହ୍ନ ୮ ଘଣ୍ଟାରୁ ସ୍କୁଲ ଛାତ୍ରଛାତ୍ରୀମାନଙ୍କର ଏକ ଶୋଭାଯାତ୍ରା ଆରମ୍ଭ କରାଯାଇ ବିଧାନସଭା ପ୍ରାଙ୍ଗଣ ମଧ୍ୟରେ ଥିବା ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ପ୍ରତିମୂର୍ତ୍ତି ଏବଂ ଗୋପବନ୍ଧୁ ଛକଠାରେ ଥିବା ଉତ୍କଳମଣିଙ୍କ ପ୍ରତିମୂର୍ତ୍ତିରେ ମାଲ୍ୟାର୍ପଣ କରାଯିବ । ଶୋଭାଯାତ୍ରାରେ ଓଡିଆ ଭାଷା, ସଂସ୍କୃତି ଓ ସ୍ୱାଭିମାନ ରକ୍ଷା ସମ୍ପର୍କୀୟ ସ୍ଲୋଗାନ୍‌ମାନ ଦିଆଯିବ । ଏହି ଶୋଭାଯାତ୍ରା ୯ ଘଣ୍ଟା ପର୍ଯ୍ୟନ୍ତ ଚାଲିବ । ତତ୍ପରେ ବୁଦ୍ଧିଜୀବୀ, ଲେଖକ, ସାମ୍ବାଦିକ ପ୍ରଭୃତିଙ୍କର ଏକ ବନ୍ଧୁମିଳନ ଅନୁଷ୍ଠିତ ହେବ । ଏଥିରେ ଉପସ୍ଥିତ ହୋଇ ଉଦ୍‌ବୋଧନ ଦେବା ନିମନ୍ତେ ମୁଖ୍ୟମନ୍ତ୍ରୀ ଓ ବିରୋଧୀଦଳନେତାଙ୍କୁ ଅନୁରୋଧ କରାଯିବ । ଏହି ଅବସରରେ ଉତ୍କଳ ସମ୍ମିଳନୀର ଆଭିମୁଖ୍ୟ ଏବଂ ଦାବୀଗୁଡିକ ପୂରଣ ପାଇଁ ଏକ ମାନପତ୍ର ମୁଖ୍ୟମନ୍ତ୍ରୀଙ୍କୁ ପ୍ରଦାନ କରାଯିବ । ଏହି କାର୍ଯ୍ୟକ୍ରମକୁ ସଫଳ ଭାବେ କାର୍ଯ୍ୟକାରୀ କରିବାପାଇଁ ଶ୍ରୀ ସୁଦର୍ଶନ ନାୟକ ଏବଂ ଶ୍ରୀ ଗଣେଶ ପ୍ରସାଦ ପରିଜାଙ୍କୁ ଅନୁରୋଧ କରାଗଲା । ପରିଶେଷରେ ସଭାପତିଙ୍କୁ ଧନ୍ୟବାଦ ଅର୍ପଣ କରାଯାଇ ସଭା ସାଙ୍ଗ ହେଲା ।

ଗୋପାଳକୃଷ୍ଣ ଶ୍ରୀଚନ୍ଦନ
(ସଚିବ)

କୃଷ୍ଣପ୍ରସାଦ ମହାପାତ୍ର
(ସଭାପତି)

# ତା-୯-୪-୯୫ ରିଖରେ ଅନୁଷ୍ଠିତ ସ୍ୱତନ୍ତ ଓଡିଶା ପ୍ରଦେଶ ଗଠନ ହୀରକ ଜୟନ୍ତୀ ବର୍ଷ ଚିଠା ପ୍ରସ୍ତୁତି ବୈଠକର ବିବରଣୀ

ଉପସ୍ଥିତ ସଭ୍ୟ :

(୧) ହରିଶ୍ଚନ୍ଦ୍ର ବକ୍ସିପାତ୍ର (୨) ବସନ୍ତ କୁମାର ପାଣିଗ୍ରାହୀ (୩) ଭାବଗ୍ରାହୀ ମିଶ୍ର (୪) ଗଣେଶ ପ୍ରସାଦ ପରିଜା (୫) ସାତକଡି ହୋତା (୬) କୈଳାସ ଆଚାର୍ଯ୍ୟ (୭) ଗୋପାଳକୃଷ୍ଣ ଶ୍ରୀଚନ୍ଦନ (୮) ବସନ୍ତ କୁମାର ତ୍ରିପାଠୀ ।

ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଉପସଭାପତିଙ୍କ ସଭାପତିତ୍ୱରେ ଏହି ସ୍ୱତନ୍ତ ବୈଠକ ଅନୁଷ୍ଠିତ ହୋଇଥିଲା । ତା-୧-୪-୯୫ ରୁ ତା-୩୧-୩-୯୬ ପର୍ଯ୍ୟନ୍ତ ହୀରକ ଜୟନ୍ତୀ ବର୍ଷ ମଧ୍ୟରେ ବିଭିନ୍ନ କାର୍ଯ୍ୟକ୍ରମ ସମ୍ପର୍କରେ ଆଲୋଚନା କରାଯାଇ ନିମ୍ନଲିଖିତ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଯିବା ପାଇଁ ସୁପାରିଶ କରାଗଲା ।

(୧) ଆନ୍ଧ୍ର ପ୍ରଦେଶରେ ଓଡ଼ିଆ ଭାଷା ସଂସ୍କୃତି ସୁରକ୍ଷା ବିଷୟରେ ବିଷଦ ଆଲୋଚନା କରାଯାଇ ସ୍ଥିର ହେଲା ଯେ ସ୍କୁଲ ଓ ଗଣଶିକ୍ଷା ମନ୍ତ୍ରୀଙ୍କ ଆଗାମୀ ହାଇଦ୍ରାବାଦ ଗ୍ରସ୍ତ କାର୍ଯ୍ୟକ୍ରମ ସମୟରେ ସମ୍ମିଳନୀର ଏକ ଶିଷ୍ଟ ମଣ୍ଡଳୀ ମନ୍ତ୍ରୀ ମହୋଦୟଙ୍କ ସହ ଯାଇ ଆନ୍ଧ୍ର ପ୍ରଦେଶର ଶିକ୍ଷା ମନ୍ତ୍ରୀ ଏବଂ ଅନ୍ୟାନ୍ୟ ଶିକ୍ଷା ବିଭାଗୀୟ କର୍ମକର୍ତ୍ତାଙ୍କ ସହ ଭେଟିବେ ଏବଂ ଏ ସମ୍ପର୍କରେ କର୍ମପନ୍ଥା ନିର୍ଦ୍ଧାରଣ କରିବେ ।

(୨) ମଧ୍ୟପ୍ରଦେଶ ରାୟପୁରରେ ସାଂସଦ ଡା: କୃପାସିନ୍ଧୁ ଭୋଇ ଏବଂ ସାଂସଦ ଶ୍ରୀ ଅଜିତ ଯୋଗୀଙ୍କ ସହ ଯୋଗାଯୋଗ କରି ମଧ୍ୟପ୍ରଦେଶରେ ଥିବା ବିଚ୍ଛିନ୍ନ ଓଡିଆ ଅଞ୍ଚଳରେ ଓଡିଆ ଭାଷା ସଂସ୍କୃତି ରକ୍ଷା ସମ୍ପର୍କରେ ପ୍ରାଥମିକ ବୈଠକ ହେବ ଏବଂ ନିର୍ଦ୍ଦିଷ୍ଟ କର୍ମପନ୍ଥା ନିର୍ଦ୍ଧାରଣ କରାଯିବ ।

(୩) ଅପ୍ରେଲ୍ ୨୪ ତାରିଖରେ କଲିକତାଠାରେ ଅନୁଷ୍ଠିତ ଅଧିବେଶନ ଅବସରରେ ପଶ୍ଚିମବଙ୍ଗ ଶିକ୍ଷା ମନ୍ତ୍ରୀଙ୍କ ସହ ସେହି ରାଜ୍ୟରେ ବସବାସ କରୁଥିବା ଓଡିଆମାନଙ୍କର ଭାଷା ସଂସ୍କୃତି ରକ୍ଷା ସମ୍ପର୍କରେ ଆଲୋଚନା କରାଯିବ ।

(୪) (କ) ବିହାରରେ ଅବସ୍ଥିତ ବିଚ୍ଛିନ୍ନାଞ୍ଚଳରେ ଓଡିଆ ଭାଷା ସଂସ୍କୃତି ସୁରକ୍ଷା ସମ୍ପର୍କରେ ଡାକ୍ତର ଦୀନେଶ ଷଡଙ୍ଗୀଙ୍କ ସହ ଯୋଗାଯୋଗ କରାଯାଇ କର୍ମପନ୍ଥା ସ୍ଥିର କରାଯିବ ।

(୪) (ଖ) ବିହାର ଝାଡଖଣ୍ଡ କାଉନ୍‌ସିଲ୍‌ରେ ସିଂହଭୂମିର ୩ ଜଣ ଓଡିଆ ପ୍ରତିନିଧି ଦେବା ସମ୍ପର୍କରେ ବିହାର ମୁଖ୍ୟ ଶାସନ ସଚିବ ଓ ଘରୋଇ ବିଭାଗ ଶାସନ ସଚିବଙ୍କ ସହ ଶ୍ରୀ ସାତକଡି ହୋତା ଆଲୋଚନା କରିବେ । ଏ ସମ୍ପର୍କରେ ଏକ ସ୍ମାରଣପତ୍ର କେନ୍ଦ୍ର ସୂଚନା ଓ ପ୍ରସାରଣ ମନ୍ତ୍ରୀ ଶ୍ରୀ କାମାକ୍ଷାପ୍ରସାଦ ସିଂହଦେବଙ୍କ ଜରିଆରେ

କେନ୍ଦ୍ର ଘରୋଇ ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ରାଜେଶ ପାଇଲଟଙ୍କୁ ମଧ ଦିଆଯିବାପାଇଁ ବ୍ୟବସ୍ଥା ହେବ ।

(୫) ହୀରକ ଜୟନ୍ତୀ ବର୍ଷକ ମଧ୍ୟରେ ବିଭିନ୍ନ ବିଚ୍ଛିନ୍ନାଞ୍ଚଳରେ ସାକ୍ଷରତା ମିଶନ୍ ସମ୍ପର୍କୀୟ ଜନଶିକ୍ଷା ବହି ବଣ୍ଟନ କରାଯିବ । ଜନ ସାକ୍ଷରତା ଅଭିଯାନ ଉପାନ୍ତ ଅଞ୍ଚଳରେ ଏହି କାର୍ଯ୍ୟ କରୁଥିବାରୁ ବିଚ୍ଛିନ୍ନାଞ୍ଚଳରେ ଏହାର ସଂପ୍ରସାରଣ ପ୍ରତି ଉତ୍କଳ ସମ୍ମିଳନୀ ଦୃଷ୍ଟି ଦେବାକୁ ସ୍ଥିର ହେଲା ।

(୬) ବିଚ୍ଛିନ୍ନାଞ୍ଚଳରେ ୧୦୦ଟି ଗ୍ରାମରେ ଭାଗବତଟୁଙ୍ଗୀ ସ୍ଥାପନ ପୂର୍ବକ ସେଗୁଡିକୁ ସକ୍ରିୟ କରାଯିବ ଏବଂ ଓଡିଆ ପାଠାଗାର କାର୍ଯ୍ୟକାରୀ ହେବ ।

(୭) ବିଚ୍ଛିନ୍ନାଞ୍ଚଳର ଶହେଟି ସ୍ଥାନରେ ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହେବ ।

(୮) ଶହେ ପୃଷ୍ଠା ମଧ୍ୟରେ ଏବଂ ପଚାଶ ଟଙ୍କା ମୂଲ୍ୟ ବିଶିଷ୍ଟ 'ଉତ୍କଳ ସମ୍ମିଳନୀର ଇତିହାସ' ପ୍ରକାଶନ ପାଇଁ ବ୍ୟବସ୍ଥା ହେବ ।

(୯) ରମ୍ଭାଠାରେ ଅନୁଷ୍ଠିତ 'ଉତ୍କଳ ସମ୍ମିଳନୀର ଫଟୋଚିତ୍ର' ବଡ ଆକାରର କରାଯାଇ ପ୍ରକାଶିତ ହେବ ଏବଂ ବିକ୍ରି କରାଯିବ ।

(୧୦) ଉତ୍କଳ ସମ୍ମିଳନୀର ଜାତୀୟ ନେତାମାନଙ୍କର ଫଟୋ ପ୍ରସ୍ତୁତ ହୋଇ ବିକ୍ରି ଓ ବଣ୍ଟନ କରାଯିବ ।

(୧୧) ମଧୁବାବୁଙ୍କ ଛବିଥିବା କାଲେଣ୍ଡର ପ୍ରସ୍ତୁତ ହୋଇ ବିକ୍ରି ବ୍ୟବସ୍ଥା ହେବ ।

(୧୨) ପ୍ରାକୃତିକ ଓଡିଶାର (ଓଡିଆ ଭାଷାଭାଷୀ ଅଞ୍ଚଳ) ପୂର୍ଣ୍ଣାଙ୍ଗ ମାନଚିତ୍ର ପ୍ରସ୍ତୁତ ହେବାର ବ୍ୟବସ୍ଥା ହେବ ।

(୧୩) ଓଡିଶା ବାହାରେ/ ବିଚ୍ଛିନ୍ନାଞ୍ଚଳରେ ହୀରକ ଜୟନ୍ତୀ ବର୍ଷକ ମଧ୍ୟରେ ଉତ୍କଳ ସମ୍ମିଳନୀର ପାଞ୍ଚୋଟି ସ୍ୱତନ୍ତ୍ର ଅଧିବେଶନ ଅନୁଷ୍ଠିତ ହେବ । କଲିକତା, ବିଶାଖାପାଟଣା, ରାୟପୁର, ଷଢ଼େଇକଳା, ରାୟଗଡା, ଜାମସେଦପୁର/ ବମ୍ବେ ସୁରଟ୍ ପ୍ରଭୃତି ସ୍ଥାନରେ ଏହା ଅନୁଷ୍ଠିତ ହେବ ।

(୧୪) ଓଡିଶା ବାହାରର ଶହେଟି ସ୍ଥାନକୁ ଓଡିଆ ଦୈନିକ ସମ୍ବାଦପତ୍ର ପଠାଯିବା ପାଇଁ ବ୍ୟବସ୍ଥା ହେବ ।

(୧୫) ଓଡିଶା ମଧ୍ୟରେ ନିମ୍ନଲିଖିତ କାର୍ଯ୍ୟକ୍ରମ କାର୍ଯ୍ୟକାରୀ ହେବ :

କ) ଉପାନ୍ତ ଅଞ୍ଚଳମାନଙ୍କରେ ରିଡିଂ ରୁମ୍ ପ୍ରତିଷ୍ଠା ।

ଖ) ଭୁବନେଶ୍ୱରରେ ସମ୍ବାଦପତ୍ର ସମ୍ପାଦକମାନଙ୍କର ସମ୍ମିଳନୀ । ରଜ ପାଖା ପାଖି ଏହି ସମ୍ମିଳନୀ କରାଯିବା ପାଇଁ ସୁପାରିଶ କରାଗଲା ।

ଗ) ପ୍ରାକ୍-ପ୍ରାଥମିକ ଓ ନିମ୍ନ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ଓଡିଆ ମାଧ୍ୟମରେ ଶିକ୍ଷାଦାନ ନିମନ୍ତେ ସରକାରୀ ବିଜ୍ଞପ୍ତି ଜାରି ।

ଘ) ବ୍ୟବସାୟ ଅନୁଷ୍ଠାନ, ଭୋଜନାଳୟ, ସିନେମା ଆଦିର ନାମ ଫଳକ ତଥା ସାଇନ୍‌ବୋର୍ଡ ବାଧ୍ୟତାମୂଳକ ଭାବେ ଓଡିଆରେ କରାଯିବା ପାଇଁ ସରକାରୀ ବିଜ୍ଞପ୍ତି ଛାଡି । ବିଧି ବିଭାଗ ସହ ଏଥିପାଇଁ ଯୋଗାଯୋଗ ସ୍ଥାପନ କରାଯିବ ।

(୧୬) ଏତଦ୍‌ବ୍ୟତୀତ ସମ୍ମିଳନୀର କାର୍ଯ୍ୟ ସୁପରିଚାଳନା ଓ କାର୍ଯ୍ୟଦକ୍ଷତା ବୃଦ୍ଧିପାଇଁ 'ସାଧାରଣ ସମ୍ପାଦକ'/ 'ସମ୍ପାଦକ' ବଦଳରେ 'ମହାସଚିବ'/ 'ସଚିବ' ବ୍ୟବହାର କରାଯିବା ପାଇଁ ସୁପାରିଶ କରାଗଲା ।

ପରିଶେଷରେ ସଭାପତିଙ୍କୁ ଧନ୍ୟବାଦ ଅର୍ପଣ କରାଯାଇ ସଭା ସାଙ୍ଗ ହେଲା ।

| | | |
|---|---|---|
| ଗୋପାଳକୃଷ୍ଣ ଶ୍ରୀଚନ୍ଦନ | ବସନ୍ତ କୁମାର ପାଣିଗ୍ରାହୀ | ହରିଶ୍ଚନ୍ଦ୍ର ବକ୍ସିପାତ୍ର |
| ସଚିବ | ମହାସଚିବ | ସଭାପତି |

## ତା-୧୫-୬-୯୫ ରିଖରେ ଅନୁଷ୍ଠିତ ବୈଠକର ବିବରଣୀ

ଉପସ୍ଥିତ ସଭ୍ୟ :

(୧) ସର୍ବଶ୍ରୀ ଜଷ୍ଟିସ୍ କୃଷ୍ଣପ୍ରସାଦ ମହାପାତ୍ର, ଉପସଭାପତି (୨) ବସନ୍ତ କୁମାର ପାଣିଗ୍ରାହୀ, ପ୍ରଧାନ ସଚିବ (୩) ସାତକଡି ହୋତା, କା: ସ: ସଭ୍ୟ (୪) ବଳରାମ ମହାନ୍ତି, ଆ: ସଭ୍ୟ (୫) ଇନ୍ଦୁଭୂଷଣ ମିଶ୍ର, ସ୍ୱତନ୍ତ୍ର ନିମନ୍ତ୍ରିତ (୬) ଜୟଦେବ ପଣ୍ଡା, କା:ସ: ସଭ୍ୟ (୭) ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ସଚିବ (୮) ବସନ୍ତ କୁମାର ତ୍ରିପାଠୀ, କା:ସ: ସଭ୍ୟ ।

ଉପସଭାପତି ଜଷ୍ଟିସ ଶ୍ରୀକୃଷ୍ଣ ପ୍ରସାଦ ମହାପାତ୍ରଙ୍କ ଅଧ୍ୟକ୍ଷତାରେ ଏହି ବୈଠକ ଅନୁଷ୍ଠିତ ହୋଇ ସମ୍ମିଳନୀର କାର୍ଯ୍ୟକାରୀ ସମିତିର ବୈଠକ ଆସନ୍ତା ଜୁଲାଇ ଦୁଇ ତାରିଖରେ ଡକାଯିବା ପାଇଁ ସ୍ଥିର ହେଲା ।

ଉକ୍ତ ବୈଠକରେ ନିମ୍ନଲିଖିତ ବିଷୟ ଉପରେ ଆଲୋଚନା ହୋଇ ପ୍ରସ୍ତାବ ଗୃହୀତ ହେବା ନିମନ୍ତେ ସୁପାରିଶ କରାଗଲା ।

୧. ହୀରକ ଜୟନ୍ତୀ ବର୍ଷ ପାଳନ ପାଇଁ ସମ୍ପୂର୍ଣ୍ଣ କାର୍ଯ୍ୟକ୍ରମ ପ୍ରସ୍ତୁତି ଓ କାର୍ଯ୍ୟକାରୀ ସମିତି ସଭ୍ୟମାନଙ୍କ ମଧ୍ୟରେ ଦାୟିତ୍ୱ ବଣ୍ଟନ ।

୨. ବିଭିନ୍ନ ଅଞ୍ଚଳରେ ଉତ୍କଳ ସମ୍ମିଳନୀର ବୈଠକ କରାଇବା ସମ୍ପର୍କରେ ଆଲୋଚନା ।

୩. ଆଜୀବନ ସଭ୍ୟ ସଂଗ୍ରହ ପ୍ରତି କାର୍ଯ୍ୟକାରୀ ସମିତି ସଭ୍ୟ ନିଜ ଅଞ୍ଚଳର କର୍ମଠ, ନିଷ୍ଠାପର ଓ ଓଡିଆ ସ୍ୱାଭିମାନୀ ବ୍ୟକ୍ତିମାନଙ୍କର ତାଲିକା ପ୍ରସ୍ତୁତ କରି ଆଗାମୀ ବୈଠକକୁ ଆସିବା ନିମନ୍ତେ ଅନୁରୋଧ କରାଗଲା ।

୪. ବିଚ୍ଛିନ୍ନାଞ୍ଚଳର ବିଦ୍ୟାଳୟମାନଙ୍କ ପାଇଁ ଓଡିଆ ପାଠ୍ୟ ପୁସ୍ତକ ମୁଦ୍ରଣ ଓ ଯୋଗାଣ ସମ୍ପର୍କରେ ଆଲୋଚନା ।

୫. ଉତ୍କଳ ସମ୍ମିଳନୀର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ପୂରଣପାଇଁ ବିଭିନ୍ନ ଉପସମିତିମାନ ଗଠନ ।

୬. ଅଗଷ୍ଟ ୧୨ ଓ ୧୩ ଦୁଇ ଦିନ ବ୍ରହ୍ମପୁରଠାରେ ଓଡିଆ ଭାଷା ସଂସ୍କୃତି ସୁରକ୍ଷା ଏବଂ ଓଡିଶାର ଆଞ୍ଚଳିକ ବିକାଶ ଓ ସଂହତି ରକ୍ଷା ସମ୍ପର୍କରେ ପ୍ରସ୍ତାବିତ ଆଲୋଚନା ଚକ୍ର ଉପରେ ପ୍ରସ୍ତାବ ଗ୍ରହଣ ।

ସଭାପତିଙ୍କୁ ଧନ୍ୟବାଦାନନ୍ତର ସଭା ସାଙ୍ଗ ହେଲା ।

ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ସଚିବ — କୃଷ୍ଣପ୍ରସାଦ ମହାପାତ୍ର, ସଭାପତି

## ତା-୨-୭-୯୫ ରିଖରେ ଅନୁଷ୍ଠିତ କାର୍ଯ୍ୟକାରୀ ସମିତିର ଦ୍ୱିତୀୟ ବୈଠକ ବିବରଣୀ : ସ୍ଥାନ - ଭୁବନେଶ୍ୱର

ଉପସ୍ଥିତ ସଭ୍ୟ :

(୧) ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଉପସଭାପତି (୨) ବସନ୍ତ କୁମାର ତ୍ରିପାଠୀ (୩) ଡକ୍ଟର ବିଶ୍ୱନାଥ କର (୪) ବାସୁଦେବ ନନ୍ଦ (ସ୍ୱତନ୍ତ୍ର ନିମନ୍ତ୍ରିତ) (୫) ପଣ୍ଡିତ ଉପେନ୍ଦ୍ରନାଥ ହୋତା (ସ୍ୱତନ୍ତ୍ର ନିମନ୍ତ୍ରିତ) (୬) ସୌରୀବନ୍ଧୁ କର (ସ୍ୱତନ୍ତ୍ର ନିମନ୍ତ୍ରିତ) (୭) ଭାବଗ୍ରାହୀ ମିଶ୍ର, କୋଷାଧ୍ୟକ୍ଷ (୮) ଇ: ଅମରେନ୍ଦ୍ର କୁମାର ଦାସ (୯) ବଳରାମ ମହାନ୍ତି (୧୦) ସାତକଡି ହୋତା (୧୧) ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ସଚିବ (୧୨) ବସନ୍ତ କୁମାର ପାଣିଗ୍ରାହୀ, ପ୍ରଧାନ ସଚିବ (୧୩) ଲୋପାମୁଦ୍ରା ମହାନ୍ତି, ସଚିବ (୧୪) ଜୟଦେବ ପଣ୍ଡା ।

ଉପସଭାପତି ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ଅଧ୍ୟକ୍ଷତାରେ ବୈଠକ ଅନୁଷ୍ଠିତ ହୋଇ ନିମ୍ନ ପ୍ରସ୍ତାବମାନ ଗୃହୀତ ହୋଇଥିଲା ।

୧. ସର୍ବପ୍ରଥମେ ଗତ ୧୨-୨-୯୫ ରେ ଅନୁଷ୍ଠିତ କାର୍ଯ୍ୟକାରୀ ସମିତିର ପ୍ରଥମ ବୈଠକ ବିବରଣୀ ପାଠ କରାଯାଇ ଗୃହୀତ ଓ ଦୃଢ଼ୀକୃତ ହୋଇଥିଲା ।

୨. ଦଳମତ ନିର୍ବିଶେଷରେ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନର ହୀରକ ଜୟନ୍ତୀ ପାଳନ ପାଇଁ ସମସ୍ତଙ୍କର ସହଯୋଗ ନିଆଯିବାକୁ ସ୍ଥିର ହେଲା ଏବଂ ସରକାର ତଥା ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନ ଏହାକୁ ପାଳନ କରିବା ପାଇଁ ଅନୁରୋଧ କରାଗଲା ।

୩. ଉତ୍କଳ ସମ୍ମିଳନୀର ବାର୍ଷିକ ଅଧିବେଶନ ପ୍ରତିବର୍ଷ ଡିସେମ୍ବର ୩୦ ଓ ୩୧ ଦୁଇ ଦିନ ପାଳିତହେବ ଏବଂ ଚଳିତବର୍ଷ ରାଉରକେଲାରେ ପାଳନ କରାଯିବାପାଇଁ ସ୍ଥିରହେଲା ।

୪. ହୀରକ ଜୟନ୍ତୀ ବର୍ଷସାରା ପାଳନ ପାଇଁ ଗତ ୯-୪-୯୫ ରେ ଏଥିପାଇଁ ଗଠିତ କମିଟିର ବୈଠକରେ ସୁପାରିଶ କରାଯାଇଥିବା ବିଭିନ୍ନ କାର୍ଯ୍ୟକ୍ରମ ଉପରେ ସବିଶେଷ ଆଲୋଚନା କରାଗଲା ଏବଂ ସର୍ବନିମ୍ନ କାର୍ଯ୍ୟକ୍ରମ ସ୍ଥିର ହେଲା । ତା-୯-୪-୯୫ ରେ ଚିଠା ପ୍ରସ୍ତୁତି କମିଟି ବୈଠକରେ ଗୃହୀତ ୧୬ ନମ୍ବର ପ୍ରସ୍ତାବ ଅନୁମୋଦିତ ହେଲା ଏବଂ ସମ୍ବିଧାନ ସଂଶୋଧନ ପାଇଁ ସୁପାରିଶ କରାଗଲା ।

(କ) ମଧୁବାବୁ, ପାରଳା ମହାରାଜା, ଗୋପବନ୍ଧୁ, ଫକୀରମୋହନ ପ୍ରଭୃତି ଜାତୀୟ ନେତାମାନଙ୍କର ଫଟୋଚିତ୍ର ସମ୍ବଳିତ କାଲେଣ୍ଡର୍ (୫୦୦୦ ନକଲ) ଏବଂ ସ୍ୱତନ୍ତ୍ର ଫଟୋଚିତ୍ର ଛପାଇବା ପାଇଁ ଶ୍ରୀ ବିଜୁ ପଟ୍ଟନାୟକ ଏବଂ ଡକ୍ଟର ବଂଶୀଧର ପଣ୍ଡାଙ୍କୁ ଅନୁରୋଧ କରି ସାକ୍ଷାତ ଓ ପତ୍ରାଳାପ କରିବାକୁ ସ୍ଥିର ହେଲା ।

(ଖ) ଓଡିଶାର ଉପାନ୍ତ ଅଞ୍ଚଳ, ବିଚ୍ଛିନ୍ନାଞ୍ଚଳ ଓ ପ୍ରବାସୀ ଓଡିଆ ନଗରୀମାନଙ୍କରେ ଉତ୍କଳ ସମ୍ମିଳନୀର ସ୍ୱତନ୍ତ୍ର ଅଧିବେଶନ କରିବା ପାଇଁ ସବିଶେଷ ଆଲୋଚନା ହୋଇ ନିମ୍ନ ପ୍ରକାରେ ପ୍ରସ୍ତାବ ଗ୍ରହଣ କରାଗଲା ।

ଖଡିଆଳ ରୋଡ୍, ଷଢ଼େଇକଳା, ବିଶାଖାପାଟଣା, ଜଳେଶ୍ୱର ଓ ବ୍ରହ୍ମପୁରରେ ସ୍ୱତନ୍ତ୍ର ଅଧବେଶନମାନ ବସିବାକୁ ସ୍ଥିର ହେଲା ।

ବ୍ରହ୍ମପୁରରେ ଆଲୋଚନା ଚକ୍ର ସହ ସ୍ୱତନ୍ତ୍ର ଅଧିବେଶନ ଆଗାମୀ ଅଗଷ୍ଟ ୧୨ ଓ ୧୩ ଦୁଇ ଦିନ ଅନୁଷ୍ଠିତ ହେବ । ଏଥିପାଇଁ ଅଭ୍ୟର୍ଥନା ସମିତି ଗଠନ ଏବଂ ଅନ୍ୟାନ୍ୟ ସମସ୍ତ ବ୍ୟବସ୍ଥା କରିବାର ଦାୟିତ୍ୱ ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀଙ୍କୁ ଦିଆଗଲା ।

ଖଡିଆଳ ଓ ବିଶାଖାପାଟଣାରେ ସମ୍ମିଳନୀ ବୈଠକ ବସାଇବାର ବ୍ୟବସ୍ଥା ସମ୍ପର୍କରେ ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଷଢ଼େଇକଳା ଅଧିବେଶନ ପାଇଁ ଡକ୍ଟର ବିଶ୍ୱନାଥ କର ଏବଂ ଜଳେଶ୍ୱରରେ ଅଧିବେଶନ ବସାଇବାର ବ୍ୟବସ୍ଥା ପାଇଁ ଶ୍ରୀ ଅମରେନ୍ଦ୍ର କୁମାର ଦାସଙ୍କୁ ଦାୟିତ୍ୱ ଦିଆଗଲା ।

ଏମାନେ ଅଭ୍ୟର୍ଥନା ସମିତି ଗଠନ ଏବଂ ଅନ୍ୟାନ୍ୟ ଆନୁସଙ୍ଗିକ ବ୍ୟବସ୍ଥା କରି ବ୍ରହ୍ମପୁର ଅଧିବେଶନ (ଅଗଷ୍ଟ ୧୨ ଓ ୧୩) ରେ ରିପୋର୍ଟ ଦେବେ ବୋଲି ସ୍ଥିର ହେଲା । ଏତଦ୍ ବ୍ୟତୀତ ପ୍ରବାସୀ ଓଡିଆ ଅଞ୍ଚଳ ଯଥା- ବମ୍ବେ, ସୁରଟ୍, ବିଚ୍ଛିନ୍ନାଞ୍ଚଳ, ମଧ୍ୟ ପ୍ରଦେଶର ରାୟପୁରଠାରେ ମଧ୍ୟ ଅଧିବେଶନ ବସାଇ ଓଡିଆ ଭାଷା ସଂସ୍କୃତି ସୁରକ୍ଷା ସମ୍ପର୍କରେ ପଦକ୍ଷେପ ନେବାପାଇଁ ପ୍ରସ୍ତାବ ଗୃହୀତହେଲା । ଝାରସୁଗୁଡା ପରି ଉପାନ୍ତ ଅଞ୍ଚଳରେ ଓଡିଆ ଭାଷା-ସଂସ୍କୃତି ଉଦ୍‌ବେଗଜନକ ଅବସ୍ଥାରେ ପହଞ୍ଚି ଥିବାରୁ ସେଠାରେ ମଧ୍ୟ ଏକ ସ୍ୱତନ୍ତ୍ର ଅଧିବେଶନର ଆବଶ୍ୟକତା ଉପଲବ୍ଧ କରାଯାଇ ଥିଲା ।

୫.  ହୀରକ ଜୟନ୍ତୀ ବର୍ଷ ମଧ୍ୟରେ (୧) ଉତ୍କଳ ସମ୍ମିଳନୀର ଇତିହାସ ସଂକଳନ ଏବଂ (୨) ଓଡିଶାର ବିଭିନ୍ନ ଅଞ୍ଚଳରେ ପ୍ରଚଳିତ ଗ୍ରାମୀଣ ଓ ଦେଶଜ ଶବ୍ଦ ସଂକଳନ କରି ଓଡିଆ ବ୍ୟାକରଣ ରଚନା କରାଯାଇ ୧୯୯୬ ଅପ୍ରେଲ୍ ପହିଲା ଦିନ ପ୍ରକାଶିତ ହେବା କାର୍ଯ୍ୟକ୍ରମ ସ୍ଥିର ହେଲା । ଉତ୍କଳ ସମ୍ମିଳନୀର ଇତିହାସ ସଂକଳନ ଦାୟିତ୍ୱ ଶ୍ରୀ ବଳରାମ ମହାନ୍ତିଙ୍କୁ ପ୍ରଦାନ କରିଯିବା ସ୍ଥଳେ ଓଡିଆ ବ୍ୟାକରଣ ସଂକଳନ କାର୍ଯ୍ୟ ଡକ୍ଟର ବାସୁଦେବ ନନ୍ଦଙ୍କୁ ଅର୍ପଣ କରାଗଲା । ଓଡିଶାର ବିଚ୍ଛିନ୍ନାଞ୍ଚଳ, ପଶ୍ଚିମାଞ୍ଚଳ, ଦକ୍ଷିଣାଞ୍ଚଳ ତଥା ଉତରାଞ୍ଚଳରେ ପ୍ରଚଳିତ ବିଭିନ୍ନ ଦେଶଜ ଶବ୍ଦ ତହିଁରେ ଅଭିଜ୍ଞ ବ୍ୟକ୍ତି ବିଶେଷଙ୍କଠାରୁ ସଂଗ୍ରହ କରି ଏ କାର୍ଯ୍ୟ କରାଯାଇ ପାରିବ ବୋଲି ଡକ୍ଟର ନନ୍ଦ ଏବଂ ଉପସ୍ଥିତ ସଭ୍ୟମାନେ ମତପ୍ରକାଶ କରିଥିଲେ । ସେହିପରି ଉତ୍କଳ ସମ୍ମିଳନୀର ଇତିହାସ ବିଭିନ୍ନ ଅନୁଷ୍ଠାନ, ସରକାରୀ ନଥିପତ୍ର ଏବଂ ବ୍ୟକ୍ତି ବିଶେଷଙ୍କ ପାଖରେ ଥିବା କାଗଜପତ୍ର ତଥା ରଚନାବଳୀରୁ ତଥ୍ୟ ସଂଗ୍ରହ କରାଯାଇ ରଚନା କରାଯିବା ପାଇଁ ସ୍ଥିର ହେଲା ।

ଏହି ସମ୍ପର୍କୀୟ ଆଲୋଚନା ବେଳେ ସ୍ଥିର ହେଲା ଯେ ଷଢ଼େଇକଳା-ଖରସୁଆଁର ଓଡିଶା ସହ ମିଶ୍ରଣ ଏବଂ ପୁନଶ୍ଚ ବିହାର ସହ ସଂଯୋଗ (ଜାନୁଆରୀ ପହିଲାରୁ ୧୮ ମେ ୧୯୪୮) ସଂପର୍କିତ ନୋଟିଫିକେସନ ଐତିହାସିକ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ତାହା ସଂଗ୍ରହ କରାଯିବ ।

୬.  ଆଜୀବନ ସଭ୍ୟମାନଙ୍କୁ ପରିଚୟ ପତ୍ର ବା ସ୍ୱତନ୍ତ୍ର ବ୍ୟାଚ୍ ପ୍ରଦାନ କରାଯିବା ପାଇଁ ସ୍ଥିର ହେଲା, ଯାହାକୁ ସେମାନେ ବିଭିନ୍ନ ସମ୍ମିଳନୀ ଅଧିବେଶନ ଓ ସଭା ସମିତିରେ ବ୍ୟବହାର କରି ପାରିବେ ।

୭.  କାର୍ଯ୍ୟକାରୀ ସମିତି ସଭ୍ୟମାନେ ଆଜୀବନ ସଭ୍ୟ ଚାନ୍ଦା ଉତ୍କଳ ସମ୍ମିଳନୀ ସାଧାରଣ ପରିଷଦ ସଦସ୍ୟମାନଙ୍କଠାରୁ ଆଦାୟକରି ଆଗାମୀ ଅଗଷ୍ଟ ୧୨ ତାରିଖରେ ବ୍ରହ୍ମପୁରଠାରେ ପ୍ରସ୍ତାବିତ ଅଧିବେଶନ ସମୟରେ ଜମା ଦେବା ପାଇଁ ଅନୁରୋଧ କରାଗଲା । ମହାସଚିବ ସାଧାରଣ ପରିଷଦ ସଭ୍ୟମାନଙ୍କର ଜିଲ୍ଲାଓ୍ୱାରୀ ନାମ ତାଲିକା ପାଠକରି ଶୁଣାଇଥିଲେ । ପ୍ରତ୍ୟେକ ଜିଲ୍ଲାରୁ ୧୦ ଜଣ କରି ସଭ୍ୟ ସାଧାରଣ ପରିଷଦରେ ନେବା ପାଇଁ ସମ୍ବିଧାନରେ ବ୍ୟବସ୍ଥା ଥିବାରୁ ଖାଲି ପଡିଥିବା ସଭ୍ୟ ସ୍ଥାନ ପୂରଣ ପାଇଁ ନାମ ସୁପାରିଶ କରିବାକୁ ସଂପୃକ୍ତ ଜିଲ୍ଲାର କାର୍ଯ୍ୟକାରୀ ସମିତି ସଭ୍ୟମାନଙ୍କୁ ଅନୁରୋଧ କରାଗଲା । କାର୍ଯ୍ୟକାରୀ ସମିତି ସଭ୍ୟମାନେ ଆଜୀବନ ସଭ୍ୟ ହେବା ଉଚିତ୍ ବୋଲି ମତ ପ୍ରକାଶ ପାଇଥିଲା ।

୮.  ସମ୍ବିଧାନ ବ୍ୟବସ୍ଥା ପରିସର ମଧ୍ୟରେ ବିଭିନ୍ନ ସରକାରୀ ବିଭାଗରୁ ଅନୁଦାନ ପ୍ରାପ୍ତି

ପାଇଁ ପଦକ୍ଷେପ ନେବା ନିମନ୍ତେ ସ୍ଥିର ହେଲା । ଡକ୍ଟର ଭାବଗ୍ରାହୀ ମିଶ୍ର ରାଜ୍ୟ ତଥା କେନ୍ଦ୍ରୀୟ ସରକାରୀ ବିଭାଗ ଏବଂ ସ୍ୱୟଂଚାଳିତ ଅନୁଷ୍ଠାନମାନଙ୍କ ଦ୍ୱାରା ବିଭିନ୍ନ ପ୍ରୋଜେକ୍ଟ ନିମନ୍ତେ ଦିଆଯାଉଥିବା ଅନୁଦାନ ପ୍ରାପ୍ତି ପାଇଁ ଉଦ୍ୟମ କରିବାକୁ ମତ ଦେଇଥିଲେ । ଏହା ସାଧାରଣ ଭାବେ ସମର୍ଥିତ ହୋଇଥିଲା । ସତର୍କତା ଅବଲମ୍ବନ ପୂର୍ବକ ଏପରି ଗ୍ରାଣ୍ଟ ପାଇଁ ଭବିଷ୍ୟତରେ ପ୍ରଚେଷ୍ଟା କରାଯାଇ ପାରେ ବୋଲି ସଭାପତିତ୍ୱ କରୁଥିବା ଉପସଭାପତି ଶ୍ରୀ ବଙ୍କିପାତ୍ର ମତ ଦେଇଥିଲେ ।

୯. ବିଚ୍ଛିନ୍ନାଞ୍ଚଳର ବିଦ୍ୟାଳୟମାନଙ୍କ ପାଇଁ ପାଠ୍ୟ ପୁସ୍ତକ ମୁଦ୍ରଣ ଓ ଯଥା ସମୟରେ ଯୋଗାଣ ସଂପର୍କରେ ଆଲୋଚନା କରାଯାଇ ସ୍ଥିର ହେଲା ଯେ ରାଜ୍ୟ ଶିକ୍ଷା ବିଭାଗ ତଥା ସଂପୃକ୍ତ ବିଚ୍ଛିନ୍ନାଞ୍ଚଳ ରାଜ୍ୟର ଶିକ୍ଷା ବିଭାଗମାନଙ୍କ ସହ ପ୍ରତ୍ୟକ୍ଷ ସଂପର୍କ ରକ୍ଷା କରାଯାଇ ବିହିତ ବ୍ୟବସ୍ଥା ଗ୍ରହଣ କରାଯିବ ।

୧୦. ସମ୍ମିଳନୀର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସାଧନ ପାଇଁ ବିଭିନ୍ନ ଉପସମିତି ଗଠନ ସଂପର୍କରେ ଆଲୋଚନା କରାଯାଇଥିଲା । ଏକ ଗବେଷଣା ଉପସମିତି ଗଠନର ଆବଶ୍ୟକତା ଉପଲବ୍ଧ କରାଗଲା । ଭବିଷ୍ୟତରେ ଅନ୍ୟାନ୍ୟ ଉପସମିତି ଗଠନ କରାଯିବ ଏବଂ ହୀରକ ଜୟନ୍ତୀ ବର୍ଷର ଅବଶିଷ୍ଟ ସମୟ ମଧ୍ୟରେ ଗୃହୀତ କାର୍ଯ୍ୟକ୍ରମ ଗୁଡିକର ସଫଳ ରୂପାୟନ ଓ କାର୍ଯ୍ୟକାରିତା ପାଇଁ ସଭ୍ୟମାନେ ଆତ୍ମନିଯୋଗ କରିବା ନିମନ୍ତେ ସଭାପତି ପରାମର୍ଶ ଦେଇଥିଲେ ।

୧୧. ଅଗଷ୍ଟ ମାସରେ ପ୍ରସ୍ତାବିତ ବ୍ରହ୍ମପୁର ଅଧିବେଶନରେ ୧୨ ତାରିଖ ଦିନ ଓଡ଼ିଆ ଭାଷା ସଂସ୍କୃତି ଉପରେ ଏବଂ ୧୩ ତାରିଖରେ ଆଞ୍ଚଳିକ ସଂହତି ରକ୍ଷା ଉପରେ ଆଲୋଚନାଚକ୍ର ଅନୁଷ୍ଠିତ ହେବା ସ୍ଥିର ହେଲା । ଏହି ଉପଲକ୍ଷେ ଏକ ସ୍ମରଣିକା ପ୍ରକାଶ ପାଇବ ଏବଂ ଏହି ଖର୍ଚ୍ଚ ଉଠାଇବା ପାଇଁ ବିଜ୍ଞାପନ ସଂଗ୍ରହ କରାଯିବା ପାଇଁ ପ୍ରସ୍ତାବ ଗୃହୀତ ହେଲା । ଏହାର ବିସ୍ତୃତ କାର୍ଯ୍ୟକ୍ରମ ପ୍ରଧାନ ସଚିବ ପ୍ରସ୍ତୁତ କରିବା ପାଇଁ ସ୍ଥିର ହେଲା ।

୧୨. ସଦର ମହକୁମା ଭୁବନେଶ୍ୱରରେ ଅବସ୍ଥାପିତ ସଚିବ ଡକ୍ଟର ଶ୍ରୀଚନ୍ଦନ ନୂତନ କାର୍ଯ୍ୟକାରୀ ପରିଷଦ (ତା-୮-୧-୯୫ ରୁ ୩୧-୩-୯୫ ପର୍ଯ୍ୟନ୍ତ) ଗଠନ ପରଠାରୁ ଗତ ଆର୍ଥିକ ବର୍ଷର ଆୟ ବ୍ୟୟ ହିସାବ ଉପସ୍ଥାପନ କରିଥିଲେ । ଏତଦ୍‌ବ୍ୟତୀତ ୧୯୯୫ ଅପ୍ରେଲ୍ ପହିଲା ହୀରକ ଜୟନ୍ତୀ ଉପଲକ୍ଷେ ଅନୁଷ୍ଠିତ ଭୁବନେଶ୍ୱର କାର୍ଯ୍ୟକ୍ରମରେ ହୋଇଥିବା ଆୟ ବ୍ୟୟ ଫର୍ଦ୍ଦ ସଭ୍ୟମାନଙ୍କ ଅବଗତି ନିମନ୍ତେ ପେଶ୍ କରିଥିଲେ । ଓଡିଶା ଷ୍ଟେଟ୍ କୋଅପରେଟିଭ୍ ବ୍ୟାଙ୍କ୍ ଲିମିଟେଡ୍‌ରେ ସମ୍ମିଳନୀର ଏକ ଆକାଉଣ୍ଟ ଓ ପାନ୍ ବହି ଖୋଲାଯାଇଥିବା ବିଷୟ ମଧ୍ୟ ବୈଠକରେ

ଜଣାଇଥିଲେ । ଗତ ବର୍ଷମାନଙ୍କର ହିସାବ ସମୀକ୍ଷା ପାଇଁ ଅଡିଟ୍‌ର ନିଯୁକ୍ତି ବିଷୟରେ ଆଲୋଚିତ ହୋଇ ପ୍ରଧାନ ସଚିବ ଏ ଦିଗରେ ବିହିତ ପଦକ୍ଷେପ ନେବା ନିମନ୍ତେ ସ୍ଥିର ହେଲା । 'ଇନ୍‌କମ୍ ଟାକ୍ସ ଏକ୍ସେମ୍‌ପସନ୍ ଷ୍ଟାଟ୍‌ସ' ପାଇଁ ଦରଖାସ୍ତ କରାଯିବାକୁ ପରାମର୍ଶ ଦିଆଗଲା ।

୧୩. କାର୍ଯ୍ୟକାରୀ ସମିତି ବୈଠକ ପାଇଁ ୧୦ ଜଣ ସଭ୍ୟଙ୍କ ଉପସ୍ଥିତି କୋରମ୍ ରୂପେ ସମ୍ବିଧାନରେ ବ୍ୟବସ୍ଥା ଅଛି । ଏହି ସଂଖ୍ୟକ ସଭ୍ୟ ଉପସ୍ଥିତ ନ ରହି ପାରିଲେ ବୈଠକ ଅନୁଷ୍ଠିତ ହେବାରେ ଅସୁବିଧା ଉପୁଜିଥିବା ଅନୁଭୂତ ହେଉଛି ବୋଲି ସଚିବ ଡକ୍ଟର ଶ୍ରୀଚନ୍ଦନ ପ୍ରକାଶ କରିଥିଲେ । ତେଣୁ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ବୈଠକରେ କୋରମ୍ ନ ହେଲେ ଅଧଘଣ୍ଟା ପର୍ଯ୍ୟନ୍ତ ବୈଠକ ମୁଲତବି ରଖି ପୁନଃ ବୈଠକ ବସିଲେ ସେତେବେଳେ ଯେତେ ଜଣ ସଭ୍ୟ ଉପସ୍ଥିତ ରହିବେ (ଅନ୍ୟୁନ ୬ ଜଣ), ତାହାକୁ କୋରମ୍ ଭାବେ ଗ୍ରହଣ କରାଯିବ ଏବଂ ତଦନୁଯାୟୀ ସମ୍ବିଧାନ ସଂଶୋଧନ ପାଇଁ କାର୍ଯ୍ୟକାରୀ ସମିତି ସର୍ବସମ୍ମତିକ୍ରମେ ସୁପାରିଶ କଲେ ।

ପରିଶେଷରେ ସଭାପତି ବୈଠକକୁ ସୁଚାରୁରୂପେ ପରିଚାଳନା କରିଥିବାରୁ ଏବଂ ନୂତନ ଆଜୀବନ ସଭ୍ୟ ଶ୍ରୀ ସୌରୀବନ୍ଧୁ କର ବୈଠକର ସମସ୍ତ ବ୍ୟବସ୍ଥା କରିଥିବାରୁ ଧନ୍ୟବାଦ ପ୍ରଦାନ ପୂର୍ବକ ସଭା ସାଙ୍ଗ ହେଲା ।

ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ସଚିବ    ବସନ୍ତ କୁମାର ପାଣିଗ୍ରାହୀ, ମହାସଚିବ    ହରିହର ବାହିନୀପତି, ସଭାପତି

## ତା-୧୩-୮-୯୫ ରିଖରେ ଅନୁଷ୍ଠିତ କାର୍ଯ୍ୟକାରୀ ସମିତିର ବୈଠକ ବିବରଣୀ

ଉପସ୍ଥିତ ସଭ୍ୟ :

(୧) ଅମରେଶ ପ୍ରସାଦ ମିଶ୍ର (୨) ଅମରେନ୍ଦ୍ର କୁମାର ଦାସ (୩) ଗଣେଶ ପ୍ରସାଦ ପରିଜା (ନିମନ୍ତ୍ରିତ) (୪) ବଳରାମ ମହାନ୍ତି (ନିମନ୍ତ୍ରିତ) (୫) ବସନ୍ତ କୁମାର ତ୍ରିପାଠୀ (୬) କୃଷ୍ଣଚନ୍ଦ୍ର ପଣ୍ଡା (୭) ଜୟଦେବ ପଣ୍ଡା (୮) ହରିହର ବାହିନୀପତି (୯) ମନୋରମା ମହାପାତ୍ର (୧୦) ଲୋପାମୁଦ୍ରା ମହାନ୍ତି (୧୧) ବିଚିତ୍ରାନନ୍ଦ ସାହୁ (୧୨) ଗୋପାଳକୃଷ୍ଣ ଶ୍ରୀଚନ୍ଦନ (୧୩) ବସନ୍ତ କୁମାର ପାଣିଗ୍ରାହୀ ।

କାର୍ଯ୍ୟକାରୀ ସମିତି ସଭ୍ୟ ଶ୍ରୀ ହରିହର ବାହିନୀପତିଙ୍କ ସଭାପତିତ୍ୱରେ ବୈଠକ ଅନୁଷ୍ଠିତ ହୋଇଥିଲା ।

(୧) ଗତ ତା-୨-୭-୧୯୯୫ ରିଖ ବୈଠକ ବିବରଣୀ ପାଠ କରାଯାଇ ଅନୁମୋଦିତ ହେବା ଅବସରରେ ତହିଁରେ ଗୃହୀତ ପ୍ରସ୍ତାବ ଗୁଡିକର କାର୍ଯ୍ୟକାରିତା ଉପରେ ବିଷଦ ଆଲୋଚନା ହୋଇଥିଲା ।

(୨) ବାର୍ଷିକ ଅଧିବେଶନ ଡିସେମ୍ବର ୩୦ ଓ ୩୧ ରେ ରାଉରକେଲାଠାରେ ଅନୁଷ୍ଠିତ ହେବା ବିଷୟରେ ଆଲୋଚନା ହୋଇ ସ୍ଥିର ହେଲା, ଯଦି ଏହା ସେଠାରେ ଅନୁଷ୍ଠିତ ହେବାର ଅସୁବିଧା ଉପୁଜେ, ତେବେ ପଦ୍ମପୁରଠାରେ ଅନୁଷ୍ଠିତ ହେବ । ପଦ୍ମପୁରଠାରେ ଏକ ଅଧିବେଶନ ପାଇଁ ନିମନ୍ତ୍ରଣ ଆସିଛି । ଶ୍ରୀମତୀ ଲୋପାମୁଦ୍ରା ମହାନ୍ତି ଓ ଶ୍ରୀ ବିଚିତ୍ରାନନ୍ଦ ସାହୁଙ୍କୁ ରାଉରକେଲା ଅଧିବେଶନ ସମ୍ଭବପର କି ନୁହେଁ, ସେପ୍ଟେମ୍ବର ମଧ୍ୟରେ ଜଣାଇବା ପାଇଁ ଅନୁରୋଧ କରାଗଲା ।

(୩) ମଧୁବାବୁ ଓ ଅନ୍ୟ ଓଡିଆ ବରପୁତ୍ରମାନଙ୍କର ଫଟୋଚିତ୍ର ସମ୍ବଳିତ କ୍ୟାଲେଣ୍ଡର ମୁଦ୍ରଣ ସମ୍ପର୍କରେ ଶ୍ରୀ ବିଜୁ ପଟ୍ଟନାୟକ ଓ ଶ୍ରୀମତୀ ଇଳା ପଣ୍ଡାଙ୍କୁ ପୁନରାୟ ଅନୁରୋଧ ଜଣାଇ ପତ୍ର ଦେବା ପାଇଁ ସ୍ଥିର ହେଲା ।

(୪) ଜଳେଶ୍ୱରଠାରେ ପ୍ରସ୍ତାବିତ ଅଧିବେଶନ ହେବାରେ କେତେକ ଅସୁବିଧା ଉପୁଜିପାରେ ବୋଲି ସ୍ଥାନୀୟ ସଭ୍ୟ ଶ୍ରୀ ଅମରେନ୍ଦ୍ର କୁମାର ଦାସ ପ୍ରକାଶ କରିବାରୁ ବାଲେଶ୍ୱର ବା ସେହି ଜିଲ୍ଲାର ଅନ୍ୟତ୍ର ସୀମାନ୍ତ ଅଞ୍ଚଳରେ ଏକ ଅଧିବେଶନ ଅନୁଷ୍ଠିତ ହେବା ପାଇଁ ବିକଳ୍ପ ଚିନ୍ତା କରାଗଲା ।

(୫) ବ୍ରହ୍ମପୁର ଅଧିବେଶନ (ଅଗଷ୍ଟ ୧୨, ୧୩) ପରେ ଇଚ୍ଛାପୁର ଓ ବିଶାଖାପାଟଣାଠାରେ ସ୍ୱତନ୍ତ୍ର ଅଧିବେଶନ ପାଇଁ ନିମନ୍ତ୍ରଣ ଆସିଥିବାରୁ ଏହା କାର୍ଯ୍ୟକାରୀ କରିବା ନିମନ୍ତେ ସ୍ଥିର ହେଲା ।

(୬) ଉତ୍କଳ ସମ୍ମିଳନୀର ଇତିହାସ ଓ ଓଡିଆ ବ୍ୟାକରଣ ରଚନା ପାଇଁ ଗତ ବୈଠକରେ ଗୃହୀତ ପ୍ରସ୍ତାବ କାର୍ଯ୍ୟକାରୀ କରାଯିବା ନିମନ୍ତେ ସ୍ଥିର ହେଲା ।

(୭) ଆଜୀବନ ସଭ୍ୟ ଚାନ୍ଦା ସଂଗ୍ରହ ଉପରେ ପୁନରାୟ ଜୋର୍ ଦିଆଗଲା ।

(୮) ସଂପ୍ରତି ଅନୁଷ୍ଠିତ ବ୍ରହ୍ମପୁର ଅଧିବେଶନରେ ଗୃହୀତ ବିଭିନ୍ନ ପ୍ରସ୍ତାବ ଗୁଡିକ ଉପରେ ବିହଙ୍ଗାବଲୋକନ କରାଯାଇ (କ) କୋଇଲା ଉପରେ ରୟାଲ୍‌ଟି ବୃଦ୍ଧି ନିମନ୍ତେ ଓ (ଖ) ରାଜ୍ୟରେ ରେଳବାଇ ସୁବିଧା ସଂପ୍ରସାରଣ ଉପରେ ଆନ୍ଦୋଳନକୁ ପଦକ୍ଷେପ ନେବା ବିଷୟ ବିଚାର କରିବା ନିମନ୍ତେ ଶ୍ରୀ ଜୟଦେବ ପଣ୍ଡା ପ୍ରସ୍ତାବ ଦେଇଥିଲେ । ଏ ବିଷୟରେ ସଂପୃକ୍ତ କର୍ତ୍ତୃପକ୍ଷଙ୍କର ଦୃଷ୍ଟି ଆକର୍ଷଣ କରାଯିବା ପାଇଁ ସ୍ଥିର ହେଲା । ବ୍ରହ୍ମପୁର ଅଧିବେଶନରେ ଗୃହୀତ ପ୍ରସ୍ତାବ ଗୁଡିକ ଚୂଡାନ୍ତ ହେବା ପରେ ଉଚିତ ପଦକ୍ଷେପ ନିଆଯିବା ପାଇଁ ମତ ପ୍ରକାଶ ପାଇଲା ।

(୯) ରାଉରକେଲା ଇସ୍ପାତ ନଗରୀରେ ଅବସ୍ଥିତ ଶିକ୍ଷାନୁଷ୍ଠାନମାନଙ୍କରେ ଓଡିଆ ଭାଷା ଶିକ୍ଷା ଆଦୌ ସନ୍ତୋଷଜନକ ନୁହେଁ ବୋଲି ଶ୍ରୀ ବିଚିତ୍ରାନନ୍ଦ ସାହୁ ଓ ଶ୍ରୀମତୀ ଲୋପାମୁଦ୍ରା ମହାନ୍ତି ପ୍ରକାଶ କରିଥିଲେ । ଇଂରାଜୀ ମିଡିୟମ୍ ପବ୍ଲିକ୍ ସ୍କୁଲଗୁଡିକରେ ଓଡିଆ ଭାଷା ଶିକ୍ଷା ବାଧ୍ୟତାମୂଳକ କରାଯିବା ପାଇଁ ମତ ପ୍ରକାଶ ପାଇଲା । ନିକଟରେ ସୁନ୍ଦରଗଡ ଜିଲ୍ଲାପାଳ ନେଇଥିବା ପଦକ୍ଷେପ ପ୍ରତି ସମର୍ଥନ ପ୍ରଦାନ କରାଯିବା ସଙ୍ଗେ ସଙ୍ଗେ ସେଠାରେ ଓଡିଆ ଶିକ୍ଷାର ବାସ୍ତବ ଅବସ୍ଥା କ'ଣ, ତାହା ଅନୁସନ୍ଧାନ କରି ଏକ ରିପୋର୍ଟ ସଂଗ୍ରହ ପାଇଁ ସ୍ଥିର ହେଲା । ଭୁବନେଶ୍ୱରରୁ ସମ୍ମିଳନୀ ତରଫରୁ ଏକ ଦୁଇଜଣିଆ ପ୍ରତିନିଧି ମଣ୍ଡଳ ଯାଇ ଏ ବିଷୟରେ ଅନୁଧ୍ୟାନ କରାଯିବା ନିମନ୍ତେ ଶ୍ରୀ ଜୟଦେବ ପଣ୍ଡା ପ୍ରସ୍ତାବ ଦେଇଥିଲେ । ଶ୍ରୀ ବିଚିତ୍ରାନନ୍ଦ ସାହୁ ଓ ଶ୍ରୀମତୀ ଲୋପାମୁଦ୍ରା ମହାନ୍ତି ଏ ଦିଗରେ ସହଯୋଗ କରିବା ନିମନ୍ତେ ସ୍ଥିର ହେଲା । ପ୍ରକୃତ ଅବସ୍ଥା ଜାଣିବା ପରେ ପରବର୍ତ୍ତୀ ପଦକ୍ଷେପ ନିଆଯିବା ପାଇଁ ସ୍ଥିର ହେଲା ।

ରାତ୍ରି ଅଧିକ ହେବାରୁ ଏହିଠାରେ ଆଲୋଚନା ସ୍ଥଗିତ ରଖାଯାଇ ସଭାପତିଙ୍କୁ ଧନ୍ୟବାଦ ପ୍ରଦାନ ପୂର୍ବକ ସଭା ସାଙ୍ଗ ହେଲା ।

ଗୋପାଳକୃଷ୍ଣ ଶ୍ରୀଚନ୍ଦନ,ସଚିବ ବସନ୍ତ କୁମାର ପାଣିଗ୍ରାହୀ,ମହାସଚିବ ହରିହର ବାହିନୀପତି,ସଭାପତି

## ତା-୩-୧୨-୯୫ ରିଖରେ ଅନୁଷ୍ଠିତ କାର୍ଯ୍ୟକାରୀ ସମିତି ବୈଠକ ବିବରଣୀ । ସ୍ଥାନ: ଗୋପବନ୍ଧୁଭବନ, କଟକ

ଉପସ୍ଥିତ ସଭ୍ୟ :

(୧) କୃଷ୍ଣପ୍ରସାଦ ମହାପାତ୍ର,ଉପସଭାପତି (୨) ହରିଶ୍ଚନ୍ଦ୍ର ବକ୍ସିପାତ୍ର,ଉପସଭାପତି (୩)ବିପିନ ବିହାରୀ ରଥ, କା:ସ:ସଭ୍ୟ (୪) ଇଂ. ଅମରେନ୍ଦ୍ର କୁମାର ଦାସ, କା:ସ:ସଭ୍ୟ (୫) ବିନୟ କୁମାର ପଣ୍ଡା (୬) ବଳରାମ ମହାନ୍ତି (ସ୍ୱତନ୍ତ୍ର ନିମନ୍ତ୍ରିତ) (୭) କିଶୋର ଚନ୍ଦ୍ର ତ୍ରିପାଠୀ (ନିମନ୍ତ୍ରିତ) (୮) ସୁନୀଲ୍ କୁମାର ରାୟ (ନିମନ୍ତ୍ରିତ) (୯) ମନୋରମା ମହାପାତ୍ର, କା:ସ:ସଭ୍ୟା (୧୦) ହରିହର ବାହିନୀପତି, କା:ସ:ସଭ୍ୟ (୧୧) ଯୁଗଳକିଶୋର ମହାନ୍ତି (ସ୍ୱତନ୍ତ୍ର ନିମନ୍ତ୍ରିତ) (୧୨) ଲୋପାମୁଦ୍ରା ମହାନ୍ତି, କା:ସ:ସଭ୍ୟା ଓ ସଚିବ (୧୩) ଶ୍ରୀକାନ୍ତ ପଣ୍ଡା, ନିମନ୍ତ୍ରିତ (୧୪) ଅରୁଣ କୁମାର ପଣ୍ଡା, ନିମନ୍ତ୍ରିତ (୧୫) ବସନ୍ତ କୁମାର ପାଣିଗ୍ରାହୀ, ମହାସଚିବ (୧୬) ଡକ୍ଟର ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ସଚିବ (୧୭) ଡକ୍ଟର ରାଧାନାଥ ରଥ, ସଭାପତି ।

ସ୍ଥାୟୀ ସଭାପତି ଡକ୍ଟର ରାଧାନାଥ ରଥଙ୍କ ଅଧ୍ୟକ୍ଷତାରେ ବୈଠକ ଅନୁଷ୍ଠିତ ହୋଇଥିଲା ।

**ପ୍ରସ୍ତାବ - ୧ :** ଆଗାମୀ ଡିସେମ୍ବର ୩୦ ଓ ୩୧ ରେ କଟକଠାରେ ସମ୍ମିଳନୀର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେବା ପାଇଁ ସ୍ଥିର ହୋଇ ନିମ୍ନ ପ୍ରକାରେ ଏକ ଅଭ୍ୟର୍ଥନା ସମିତି ଗଠନ କରାଗଲା :- (୧) ଜଷ୍ଟିସ୍ ଶ୍ରୀ ଯୁଗଳକିଶୋର ମହାନ୍ତି, ସଭାପତି (୨) ଶ୍ରୀମତୀ ମନୋରମା ମହାପାତ୍ର, କାର୍ଯ୍ୟକାରୀ ସଭାପତି (୩) ଶ୍ରୀ କିଶୋର ଚନ୍ଦ୍ର ତ୍ରିପାଠୀ, ଯୁଗ୍ମ କାର୍ଯ୍ୟକାରୀ ସଭାପତି (୪) ଶ୍ରୀ ଶ୍ରୀକାନ୍ତ ପଣ୍ଡା, ସମ୍ପାଦକ (୫) ଶ୍ରୀ ଅରୁଣ କୁମାର ପଣ୍ଡା, ଯୁଗ୍ମ ସମ୍ପାଦକ (୬) ଶ୍ରୀ ବିପିନ ବିହାରୀ ରଥ, ସଭ୍ୟ (୭) ଶ୍ରୀ ତ୍ରିଲୋଚନ କାନୁନ୍‌ଗୋ, ସଭ୍ୟ (୮) ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ, ଉ:ସ: ମହାସଚିବ ।

ଏତଦ୍ ବ୍ୟତୀତ 'କୋପ୍‌ଟେଡ୍' ସଭ୍ୟ ଅଭ୍ୟର୍ଥନା ସମିତିରେ ନିଆଯିବା ପାଇଁ ସ୍ଥିର ହେଲା । ଆଗାମୀ ୮ ତାରିଖ ଦିନ ଅପରାହ୍ଣ ୪.୧୫ ମିନିଟ୍ ସମୟରେ କଟକ ଗୋପବନ୍ଧୁ ଭବନଠାରେ ଅଭ୍ୟର୍ଥନା ସମିତିର ପ୍ରଥମ ବୈଠକ ବସିବାର ସ୍ଥିର ହେଲା ।

**ପ୍ରସ୍ତାବ - ୨ :** ମହାସଚିବ ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ ବିହାର ଖଣ୍ଡ ମୌଦା ହାଇସ୍କୁଲର ୯୦% ଓଡିଆ ଶିକ୍ଷକଙ୍କୁ ବଦଳି କରାଯାଇ ସେମାନଙ୍କ ସ୍ଥାନରେ ହିନ୍ଦୀ ଶିକ୍ଷକ ନିଯୁକ୍ତି ଦିଆଯାଇଥିବା ବିଷୟ ଉତ୍ଥାପନ କରିଥିଲେ । ଏ ବିଷୟରେ ଖବର କାଗଜ ମାନଙ୍କରେ ସମ୍ବାଦ ପ୍ରକାଶ ପାଇଛି । ଏହାଦ୍ୱାରା ଉଦ୍ଦେଶ୍ୟମୂଳକ ଭାବେ ବିହାରରେ ଥିବା ଓଡିଆ ବିଚ୍ଛିନ୍ନାଞ୍ଚଳରେ ଓଡିଆ ଭାଷାକୁ ଚାପିଦେବା ପାଇଁ ହୀନ ଉଦ୍ୟମ ହେଉଥିବାରୁ ଉପସ୍ଥିତ ସଭ୍ୟମାନେ ଉଦ୍‌ବେଗ ପ୍ରକାଶ କରିଥିଲେ । ସବିଶେଷ ଆଲୋଚନା କରି ସ୍ଥିର ହେଲା । ନିମ୍ନଲିଖିତ ସଭ୍ୟମାନଙ୍କୁ ନେଇ ଗଠିତ ଏକ ପ୍ରତିନିଧି ମଣ୍ଡଳ ଖଣ୍ଡ ମୌଦା ଯାଇ ପରିସ୍ଥିତି ଅନୁଧ୍ୟାନ କରିବେ ଏବଂ ଆସନ୍ତା ବୈଠକ ପୂର୍ବରୁ ରିପୋର୍ଟ ଦେବେ ।

(୧) ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ (୨) ମନୋରମା ମହାପାତ୍ର
(୩) ହରିଶ୍ଚନ୍ଦ୍ର ବକ୍ସିପାତ୍ର (୪) ବିପିନ ବିହାରୀ ରଥ

ଏହି ରିପୋର୍ଟ ପାଇଲା ପରେ ଏକ ପ୍ରତିନିଧି ଦଳ ଏ ସମ୍ପର୍କରେ ବିହାର ମୁଖ୍ୟମନ୍ତ୍ରୀଙ୍କୁ ପାଟନାଠାରେ ଭେଟି ପ୍ରତିକାର ପାଇଁ ଆଲୋଚନା କରିବେ ବୋଲି ସ୍ଥିର ହେଲା । ବୈଠକ ପରେ ପରେ ଉତ୍କଳ ସମ୍ମିଳନୀର ସଭାପତି ଡକ୍ଟର ରାଧାନାଥ ରଥଙ୍କୁ ତାଙ୍କର ଅନେଶତ ବର୍ଷ ପୂର୍ତ୍ତି ଏବଂ ଏକଶତତମ ଜୟନ୍ତୀ ଅବସରରେ ଉତ୍କଳ ସମ୍ମିଳନୀ ତରଫରୁ ମାନପତ୍ର ପ୍ରଦାନ ପୂର୍ବକ ଭବ୍ୟ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା ।

ସଭାପତିଙ୍କୁ ଧନ୍ୟବାଦ ଜଣାଇ ସଭା ସାଙ୍ଗ ହେଲା ।

ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ସଚିବ ବସନ୍ତ କୁମାର ପାଣିଗ୍ରାହୀ, ମହାସଚିବ ହରିହର ବାହିନୀପତି, ସଭାପତି

## ତା-୨୮-୧-୯୬ ରିଖରେ ଭୁବନେଶ୍ୱର ସ୍ୱତନ୍ତ୍ର ସର୍କିଟ ହାଉସ୍‌ଠାରେ ଅନୁଷ୍ଠିତ କାର୍ଯ୍ୟକାରୀ ସମିତି ବୈଠକ ବିବରଣୀ

ଉପସ୍ଥିତ ସଭ୍ୟ :

(୧) କୃଷ୍ଣପ୍ରସାଦ ମହାପାତ୍ର (୨) ହରିଶ୍ଚନ୍ଦ୍ର ବକ୍ସିପାତ୍ର (୩) କୈଳାସ ଆଚାର୍ଯ୍ୟ (୪) ବସନ୍ତ କୁମାର ପାଣିଗ୍ରାହୀ (୫) ପତିତପାବନ ପ୍ରଧାନ (୬) ଆଚାର୍ଯ୍ୟ ଭାବାନନ୍ଦ (୭) ଗୋପାଳକୃଷ୍ଣ ଶ୍ରୀଚନ୍ଦନ (୮) ବଳରାମ ମହାନ୍ତି (୯) ଇଂ. ସମରେନ୍ଦ୍ର କୁମାର ଦାସ (୧୦) ହରିହର ବାହିନୀପତି (୧୧) ବସନ୍ତ କୁମାର ତ୍ରିପାଠୀ (୧୨) ବିଶ୍ୱନାଥ ନାୟକ (୧୩) ସିମାଦ୍ରି ମିଶ୍ର ।

ନିର୍ଦ୍ଦିଷ୍ଟ ସମୟରେ ଉପସଭାପତି ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ସଭାପତିତ୍ୱରେ ବୈଠକ ଅନୁଷ୍ଠିତ ହୋଇଥିଲା ।

(୧) ଗତ ୩-୧୨-୯୫ ରେ ଅନୁଷ୍ଠିତ କାର୍ଯ୍ୟକାରୀ ସମିତି ବିବରଣୀ ପାଠ କରାଯାଇ ଠିକ୍ ଥିବାରୁ ଦୃଢ଼ୀଭୂତ ହୋଇଥିଲା ଏବଂ ସମୀକ୍ଷା କରାଯାଇ ଥିଲା ।

(୨) ଗତ ବୈଠକର ଦ୍ୱିତୀୟ ପ୍ରସ୍ତାବ ଉପରେ ମହାସଚିବ ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ ବିହାର ଖଣ୍ଡମୌଦା ଯାଇ ସେଠାରେ ଥିବା ଉତ୍କଳ ସମ୍ମିଳନୀ ସଚିବ ଡ଼ା: ଦୀନେଶ ଷଡଙ୍ଗୀଙ୍କ ସହ ସେଠା ହାଇସ୍କୁଲରେ ଅବସ୍ଥାପିତ ଓଡିଆ ଶିକ୍ଷକମାନଙ୍କର ବଦଳି ସମ୍ପର୍କରେ ଅନୁଧ୍ୟାନ କରି ପ୍ରତ୍ୟକ୍ଷଦର୍ଶୀ ବିବରଣୀ ପ୍ରଦାନ କରିଥିଲେ ।

(୩) ଶ୍ରୀ ପାଣିଗ୍ରାହୀ ବିହାରରୁ ଫେରିବା ବାଟରେ ଖଡ୍‌ଗପୁରଠାରେ ଓହ୍ଲାଇ ସେଠାରେ ଥିବା ଉତ୍କଳ ବିଦ୍ୟାପୀଠ ଓ ପତିତପାବନ ସଙ୍ଘ କର୍ମକର୍ତ୍ତାମାନଙ୍କ ସହ ଆଲୋଚନା କରି ଏକ ଦିନିକିଆ ସ୍ୱତନ୍ତ୍ର ଅଧିବେଶନ ମେ ଦ୍ୱିତୀୟ ସପ୍ତାହରେ ହେବା ନିମନ୍ତେ ଆପାତତଃ ସ୍ଥିର କରିଥିଲେ । ଡା: ଦୀନେଶ ଷଡଙ୍ଗୀ ଏଥିପାଇଁ ଖଡ୍‌ଗପୁରଠାରେ ଏକ ଅଭ୍ୟର୍ଥନା ସମିତି ଗଠନ କରି ଅଧିବେଶନ ନିମନ୍ତେ ଆନୁଷଙ୍ଗିକ ପଦକ୍ଷେପ ନେବେ ବୋଲି ସ୍ଥିର ହେଲା ।

(୪) ଏ ପ୍ରସଙ୍ଗରେ ଆଲୋଚନା ଚାଲିଥିବା ବେଳେ ଆସନ୍ତା ୩୦ ଓ ୩୧ ଦୁଇ ଦିନ ଭୁବନେଶ୍ୱରଠାରେ ପୂର୍ବାଞ୍ଚଳ ରାଜ୍ୟଗୁଡିକର ଶିକ୍ଷାମନ୍ତ୍ରୀ ଓ ଶିକ୍ଷା ସଚିବମାନଙ୍କର ସମ୍ମିଳନୀ ଅନୁଷ୍ଠିତ ହେବ ବୋଲି ପ୍ରକାଶ ପାଇଥିଲା । ରାଜ୍ୟ ଗଣଶିକ୍ଷା ବିଭାଗ ଶାସନ ସଚିବଙ୍କ ସହ ଯୋଗାଯୋଗ କରି ଏହି ସମ୍ମିଳନୀ ସମୟରେ ପଡୋଶୀ ରାଜ୍ୟ ଗୁଡ଼ିକର ଶିକ୍ଷାମନ୍ତ୍ରୀ ଓ ଶିକ୍ଷା ସଚିବ ମାନଙ୍କ ସହ ଉତ୍କଳ ସମ୍ମିଳନୀ ତରଫରୁ ଏକ ପ୍ରତିନିଧି ମଣ୍ଡଳ ସାକ୍ଷାତ କରି ଓଡିଆ ଭାଷା ଶିକ୍ଷା ସମ୍ପର୍କରେ ଆଲୋଚନା

କରିବେ ବୋଲି ସ୍ଥିର ହେଲା । ଆଲୋଚନାର ଦିନ ଓ ସମୟ ସ୍ଥିର କରିବା ପାଇଁ ଶ୍ରୀ କୈଳାସ ଆଚାର୍ଯ୍ୟଙ୍କୁ ଦାୟିତ୍ୱ ଦିଆଗଲା ।

(୫) ଦିଲ୍ଲୀ ମୁଖ୍ୟମନ୍ତ୍ରୀଙ୍କଠାରୁ ସେଠାରେ ଅଧ୍ୟୁଷିତ ଓଡିଆମାନଙ୍କର ପିଲାମାନଙ୍କ ଶିକ୍ଷା ପାଇଁ ଓଡିଆ ସେକ୍ସନ ଖୋଲିବା ଏବଂ ଦିଲ୍ଲୀର ଦୁଇଟି ରାସ୍ତା ମଧୁବାବୁ ଓ ଗୋପବନ୍ଧୁଙ୍କ ନାମରେ ନାମିତ ହେବା ସମ୍ବନ୍ଧୀୟ ଚିଠି ସମ୍ପର୍କରେ ମହାସଚିବ ସୂଚନା ଦେଇଥିଲେ । ଡକ୍ଟର ମହତାବଙ୍କ ନାମରେ ଏକ ଗଳି ରାସ୍ତାକୁ ମହତାବ ମାର୍ଗ ଭାବେ ନାମିତ କରାଯାଇ ଥିବାର ଜଣାଗଲା । ଶ୍ରୀବ୍ରଜ କିଶୋର ତ୍ରିପାଠୀ, ସାଂସଦଙ୍କ ମାଧ୍ୟମରେ ମଧୁବାବୁ ଓ ଗୋପବନ୍ଧୁଙ୍କ ନାମରେ ରାସ୍ତା ନାମକରଣ ସମ୍ପର୍କରେ ଯୋଗାଯୋଗ କରାଯାଇ ଦିଲ୍ଲୀ ମୁଖ୍ୟମନ୍ତ୍ରୀ ଶ୍ରୀ ଖୁରାନାଙ୍କୁ ପତ୍ର ଲେଖିବାକୁ ସ୍ଥିର ହେଲା ।

(୬) ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟର ମୁଖ୍ୟ ନାମ ଫଳକ ଓଡିଆରେ ନ ଥିବାରୁ ଇସ୍ପାତ ମନ୍ତ୍ରୀ ଶ୍ରୀ ସନ୍ତୋଷ ମୋହନ ଦେବଙ୍କ ସହ ଯୋଗାଯୋଗ କରି ବିହିତ କାର୍ଯ୍ୟାନୁଷ୍ଠାନ ପାଇଁ ଶ୍ରୀ ପତିତପାବନ ପ୍ରଧାନଙ୍କୁ ଦାୟିତ୍ୱ ଦିଆଗଲା । ଏ ସମ୍ପର୍କରେ କେନ୍ଦ୍ର ଖଣି ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଗିରିଧର ଗମାଙ୍ଗ ସେଲ୍‌ର ମ୍ୟାନେଜିଂ ଡାଇରେକ୍ଟରଙ୍କୁ ଲେଖିଥିବା ଚିଠିର ନକଲ ଶ୍ରୀ ପ୍ରଧାନଙ୍କୁ ଦିଆଗଲା । ଉପସଭାପତି ଜଷ୍ଟିସ୍ ମହାପାତ୍ର ତାଙ୍କର ଆଗାମୀ ରାଉରକେଲା ଗସ୍ତ ସମୟରେ ଆନୁସଙ୍ଗିକ କାର୍ଯ୍ୟ କରିବେ ବୋଲି ଇଚ୍ଛା ପ୍ରକାଶ କରିଥିଲେ । ରାଉରକେଲାର ସ୍କୁଲମାନଙ୍କରେ ଓଡିଆ ଭାଷା ଶିକ୍ଷା ଯେପରି ବାଧାପ୍ରାପ୍ତ ନ ହୁଏ, ଏବଂ ଓଡିଆ ଭାଷାରେ କଥୋପକଥନ ଚାଲେ, ସେଥିପ୍ରତି ସଜାଗ ରହି ଜିଲ୍ଲା ପ୍ରଶାସନ ସହ ଯୋଗାଯୋଗ ରଖିବାକୁ ସ୍ଥିର ହେଲା ।

(୭) ଓଡିଶା ଦୋକାନ ଓ ବ୍ୟବସାୟ ପ୍ରତିଷ୍ଠାନ ଅଧିନିୟମର ୩୭ ଧାରା ଅନୁଯାୟୀ ଦୋକାନ ଓ ବ୍ୟବସାୟିକ ପ୍ରତିଷ୍ଠାନର ନାମ ଫଳକ ଓଡିଆରେ ଲେଖାଯିବା ସମ୍ପର୍କରେ ରାଜ୍ୟ ସରକାର ଜିଲ୍ଲା ପ୍ରଶାସନ ମାଧ୍ୟମରେ ସଂପୃକ୍ତ ସମସ୍ତଙ୍କୁ ନିର୍ଦ୍ଦେଶ ଦେବା ବିଷୟରେ ଜୋର୍ ଦେବା ପାଇଁ ସ୍ଥିର ହେଲା ।

(୮) ଗତ ବୈଠକମାନଙ୍କରେ ଗୃହୀତ ପ୍ରସ୍ତାବ ଗୁଡିକର କାର୍ଯ୍ୟକାରିତା ସମୀକ୍ଷା ଅବସରରେ ନିମ୍ନ ପ୍ରସ୍ତାବ ସବିଶେଷ ଆଲୋଚନା ପୂର୍ବକ ଗୃହୀତ ହୋଇଥିଲା ଏବଂ ସରକାରଙ୍କୁ ଜଣାଇବା ପାଇଁ ସ୍ଥିର ହେଲା ।

ପ୍ରସ୍ତାବ - ''ଉତ୍କଳ ସମ୍ମିଳନୀ ତାହାର କାର୍ଯ୍ୟାଳୟ ପାଇଁ ଓଡିଶା ସରକାରଙ୍କ ନିକଟରେ ଆବେଦନ କରିଥିଲେ । କିନ୍ତୁ ଏ ପର୍ଯ୍ୟନ୍ତ ସେ ସମ୍ପର୍କରେ କୌଣସି ନିର୍ଦ୍ଦିଷ୍ଟ ସୂଚନା ମିଳି ନ ଥିବାରୁ ଆମ୍ଭେମାନେ ଦୁଃଖ ପ୍ରକାଶ କରୁଅଛୁ ।''

(୯) ଷଢ଼େଇକଳା-ଖରସୂଆଁ ମିଶ୍ରଣ ସମ୍ପର୍କୀୟ ନୋଟିଫିକେସନ ସଂଗ୍ରହ ଉପରେ

ଆଲୋଚନା କରାଯାଇ ଏହା ସଂଗ୍ରହ ପାଇଁ ପୁନରାୟ ଉଦ୍ୟମ ନିମନ୍ତେ ସ୍ଥିର ହେଲା । କାରଣ ଏହି ଦୁଇଟି ଦେଶୀୟ ରାଜ୍ୟ ପ୍ରଥମେ ଓଡ଼ିଶାରେ ମିଶି ପରେ ଅସ୍ଥାୟୀଭାବେ ବିହାର ସହ ମିଶିଥିବା ଅବସରରେ ରାଜ୍ୟ ପୁନର୍ଗଠନ କମିଶନ ରିପୋର୍ଟ ପରିପ୍ରେକ୍ଷୀରେ ବିହାରରେ ରହିଯିବା ଦ୍ୱାରା ଏମାନଙ୍କର ସ୍ୱତନ୍ତ୍ର ସ୍ଥିତି ପ୍ରତିପାଦନ କରେ । ସେ ପରିସ୍ଥିତି ଏବେ ବି ଅନୁଶୀଳନ କରିବା ଉତ୍କଳ ସମ୍ମିଳନୀର ନୈତିକ କର୍ତ୍ତବ୍ୟ ଓ ଦାୟିତ୍ୱ ବୋଲି ସର୍ବସମ୍ମତ ମତ ପ୍ରକାଶ ପାଇଥିଲା । ଏହାର ଆଇନଗତ ଦିଗ ପ୍ରତି ଦୃଷ୍ଟି ଦେବାକୁ ସ୍ଥିର ହେଲା । ଏହି ସମୟରେ ରାଜ୍ୟ ରାଜସ୍ୱ ମନ୍ତ୍ରୀ ତଥା ଉତ୍କଳ ସମ୍ମିଳନୀର ଆଜୀବନ ସଭ୍ୟ ଶ୍ରୀ କାହ୍ନୁ ଚରଣ ଲେଙ୍କା ବୈଠକରେ ଯୋଗଦେବା ପାଇଁ ଆସିବାରୁ ତାଙ୍କୁ ସାଦର ସ୍ୱାଗତ ଜଣାଇ ଦିଆ ଯାଇଥିଲା ।

(୧୦) ଓଡ଼ିଆ ଭାଷା ପ୍ରତିଷ୍ଠାନ ଗଠନ : ଗତ ନଅ ମାସ ହେଲା ରାଜ୍ୟ ଭାଷା ସଂସ୍ଥାନ ପଞ୍ଜିକୃତ ହୋଇଥିଲେ ମଧ୍ୟ ଏ ଦିଗରେ ଅଗ୍ରଗତି ଅସ୍ପଷ୍ଟ । ଅବଶ୍ୟ ଘରୋଇ ପ୍ରଚେଷ୍ଟାରେ 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ'ର ପୁନର୍ମୁଦ୍ରଣ ଚାଲିଛି । ଡକ୍ଟର ଖଗେଶ୍ୱର ମହାପାତ୍ରଙ୍କ ତତ୍ତ୍ୱାବଧାନରେ ପ୍ରଣୀତ ହେଉଥିବା ଶବ୍ଦକୋଷ ମାତ୍ର 'ସ୍ୱରବର୍ଣ୍ଣ' ପର୍ଯ୍ୟନ୍ତ ପ୍ରକାଶ ପାଇଛି । ଓଡ଼ିଶାର ଆଞ୍ଚଳିକ ତଥା ଭାଷାଗତ ସଂହତି ରକ୍ଷା ଏବଂ ସବୁ ଅଞ୍ଚଳରେ କଥିତ ବୋଲି ତଥା ଶବ୍ଦାବଳୀ ସମ୍ବଳିତ ଭାଷାକୋଷ ଓ ବ୍ୟାକରଣ ପ୍ରଣୟନ ଅତି ଜରୁରୀ ମନେହୁଏ । ଓଡ଼ିଶା ସାହିତ୍ୟ ଏକାଡେମୀ ଏ ଦିଗରେ କିଛି କାର୍ଯ୍ୟ କରିଛନ୍ତି । ତେଣୁ ଏ ସମସ୍ତ ଦିଗ ଅନୁଧ୍ୟାନ କରି ଏକ ସଂଭାବ୍ୟ ରିପୋର୍ଟ ପ୍ରଦାନ କରିବା ପାଇଁ ନିମ୍ନଲିଖିତ ସଭ୍ୟମାନଙ୍କୁ ନେଇ ଏକ ସବ୍ କମିଟି ଗଠନ କରାଗଲା :

(୧) ଶ୍ରୀ ସାତକଡ଼ି ହୋତା (୨) ଆଚାର୍ଯ୍ୟ ଭାବାନନ୍ଦ (ଡ଼ଃ ଭାବଗ୍ରାହୀ ମିଶ୍ର) (୩) ଶ୍ରୀ କୈଳାସ ଆଚାର୍ଯ୍ୟ – ଆବାହକ ।

ସବ୍ କମିଟି ଏକ ମାସ ମଧ୍ୟରେ ଭାଷା ପ୍ରତିଷ୍ଠାନର କାର୍ଯ୍ୟକ୍ରମ ଓ ଆର୍ଥିକ ବ୍ୟବସ୍ଥା ଅନୁଧ୍ୟାନ ପୂର୍ବକ ଏକ ମାର୍ଗଦର୍ଶକ ରିପୋର୍ଟ ପ୍ରଦାନ କରିବେ । ତତ୍ପରେ ଭାଷାତତ୍ତ୍ୱବିଦ୍‌ମାନଙ୍କର ଏକ ବୈଠକ ଆହ୍ୱାନ କରିବା ପାଇଁ ବ୍ୟବସ୍ଥା ହେବ ।

(୧୧) ଓଡ଼ିଆ ବ୍ୟାକରଣ ପ୍ରଣୟନ :

(କ) ଡକ୍ଟର ବାସୁଦେବ ନନ୍ଦଙ୍କ ନେତୃତ୍ୱରେ 'ଓଡ଼ିଆ ବ୍ୟାକରଣ' ପ୍ରଣୟନ କାର୍ଯ୍ୟର ଅଗ୍ରଗତି ସମ୍ପର୍କରେ ସମୀକ୍ଷା କରାଯିବା ସଙ୍ଗେ ସଙ୍ଗେ (ଖ) ପଣ୍ଡିତ ନୀଳକଣ୍ଠ ଦାସଙ୍କ ଦ୍ୱାରା ଲିଖିତ 'ଓଡ଼ିଆ ବ୍ୟାକରଣ' ଏବଂ (ଗ) ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମାଙ୍କ ଲିଖିତ 'ଓଡ଼ିଆ ବ୍ୟାକରଣ'ର ପାଣ୍ଡୁଲିପି ସଂଗ୍ରହ କରି ପ୍ରକାଶନ ବ୍ୟବସ୍ଥା କରାଯିବା ପାଇଁ

ସ୍ଥିର ହେଲା । ପଣ୍ଡିତ ନୀଳକଣ୍ଠ ସ୍ମୃତି ସମିତି ତଥା ପଣ୍ଡିତ ନୀଳକଣ୍ଠଙ୍କର ଉତ୍ତରାଧିକାରୀମାନଙ୍କ ସହ ଏ ବିଷୟରେ ଯୋଗାଯୋଗ କରାଯିବ । ଶ୍ରୀ ହରିହର ବାହିନୀପତି ଓ ଶ୍ରୀ କୈଳାସ ଆଚାର୍ଯ୍ୟଙ୍କୁ ପାଣ୍ଡୁଲିପି ସଂଗ୍ରହପାଇଁ କଥାବାର୍ତ୍ତା କରିବାକୁ ଦାୟିତ୍ୱ ଦିଆଗଲା । ଆଚାର୍ଯ୍ୟ ଭାବାନନ୍ଦ ମଧ୍ୟ ସହାୟତା କରିବେ ବୋଲି ସ୍ଥିରହେଲା ।

ଓଡ଼ିଆ ବ୍ୟାକରଣ ମୁଦ୍ରଣ ପାଇଁ ଅନ୍ୟୂନ ୧୦ ହଜାର ଟଙ୍କା ମଞ୍ଜୁର କରିବାପାଇଁ ରାଜସ୍ୱ ବିଭାଗକୁ ଆବେଦନ କରାଯିବାକୁ ପ୍ରସ୍ତାବ ଗୃହୀତ ହେଲା ।

(୧୨) ସମ୍ବିଧାନ ସଂଶୋଧନ :

ପ୍ରଥମେ ୧୯୧୯ ରେ ଏକ ସମ୍ବିଧାନ ପ୍ରଣୀତ ହୋଇଥିଲା, ଯାହାକୁ ସଂଶୋଧିତ ଏବଂ ପରିବର୍ଦ୍ଧିତ କରି ଏବର ପ୍ରଚଳିତ ସମ୍ବିଧାନ ଗତ ୧୯୮୧ ରୁ ଗୃହୀତ ହୋଇ ବଳବତ୍ତର ଅଛି । ଏହାର କାର୍ଯ୍ୟକାରିତା ଦୃଷ୍ଟିରୁ କଣ ଅସୁବିଧା ଉପୁଜୁଛି ଏବଂ କେଉଁ କେଉଁ ଧାରା ଓ ବ୍ୟବସ୍ଥାର ସଂଶୋଧନ ଆବଶ୍ୟକ ତାହା ଅନୁଧ୍ୟାନ କରି ସମ୍ବିଧାନ ଉପସମିତି ଆସନ୍ତା ଫେବୃୟାରୀ ୨୫ ପୂର୍ବରୁ ରିପୋର୍ଟ ଦେବେ ବୋଲି ସ୍ଥିର ହେଲା ।

(୧୩) ସଂଗଠନ (ଜିଲ୍ଲା ଶାଖା ସମିତି ଗଠନ ଓ ସଭ୍ୟ ସଂଗ୍ରହ) ଓ ପାଣ୍ଠି :

(କ) ଏହା ମଧ୍ୟରେ ବ୍ରହ୍ମପୁରଠାରେ ଏକ ଶାଖା ସମିତି ଗଠିତ ହୋଇ ଥିବାର ମହାସଚିବ କହିଥିଲେ । ଭୁବନେଶ୍ୱରଠାରେ ମଧ୍ୟ ଏକ ଶାଖା ସମିତି ଗଠିତ ହେବା ପାଇଁ କାର୍ଯ୍ୟ ଚାଲିଛି ।

(ଖ) ପ୍ରତି ଜିଲ୍ଲାରୁ ଦଶଜଣ ଲେଖାଏଁ ପ୍ରତିନିଧି 'ପରିଷଦ'କୁ ନିର୍ବାଚିତ ହେବା ପାଇଁ ସମ୍ବିଧାନରେ ବ୍ୟବସ୍ଥା ଅଛି । ବର୍ତ୍ତମାନ ୧୩ ଯାଗାରେ ୩୦ ଜିଲ୍ଲା ସଂଗଠିତ ହୋଇଥିବାରୁ ପ୍ରତି ଜିଲ୍ଲାରେ ଏବଂ ରାଉରକେଲା, ପାରାଦ୍ୱୀପ ପରି ଶିଳ୍ପାଞ୍ଚଳ ତଥା ସହରାଞ୍ଚଳ ପାଇଁ ଶାଖାମାନ ଗଠିତ ହୋଇ ପର୍ଯ୍ୟାପ୍ତ ସଂଖ୍ୟକ ସଭ୍ୟ ସଂଗ୍ରହ ଦିଗରେ ବିହିତ ପଦକ୍ଷେପ ନେବାକୁ ସ୍ଥିର ହେଲା । ଜିଲ୍ଲା ପ୍ରତିନିଧି - କାର୍ଯ୍ୟକାରୀ ସମିତି ସଭ୍ୟମାନେ ଏ ଦିଗରେ ସକ୍ରିୟ ବ୍ୟବସ୍ଥା କରିବା ପାଇଁ ଅନୁରୋଧ କରାଗଲା ।

(ଗ) ବର୍ତ୍ତମାନପାଇଁ ଆଜୀବନ ସଭ୍ୟଚାନ୍ଦା ଏକଶହ ଟଙ୍କା ରଖାଯିବାପାଇଁ ସ୍ଥିରହେଲା ।

(ଘ) ଆଚାର୍ଯ୍ୟ ଭାବାନନ୍ଦ, କୋଷାଧ୍ୟକ୍ଷଙ୍କ ତତ୍ତ୍ୱାବଧାନରେ ଆଜୀବନ ସଭ୍ୟ ତାଲିକା ମୁଦ୍ରଣ କାର୍ଯ୍ୟ ଏକମାସ ମଧ୍ୟରେ ହେବ ବୋଲି ପ୍ରସ୍ତାବ ଗୃହୀତ ହେଲା ।

(ଙ) ବାର୍ଷିକ ପୌନ ପୌନିକ ଦଶ ହଜାର ଟଙ୍କା ଅନୁଦାନ ଦେବା ନିମନ୍ତେ (ଚଳିତ ଆର୍ଥିକ ବର୍ଷଠାରୁ) ଉତ୍କଳ ସମ୍ମିଳନୀ ଟ୍ରଷ୍ଟକୁ ଅନୁରୋଧ କରାଯିବା ପାଇଁ ପ୍ରସ୍ତାବ ଗୃହୀତ ହେଲା ।

(୧୪) ଆନ୍ତଃ ରାଜ୍ୟ ସୀମା ନିର୍ଦ୍ଧାରଣ :

(କ) ରାଜ୍ୟର ସୀମାନ୍ତ ଅଞ୍ଚଳରେ ଅବସ୍ଥିତ କେତେକ ଗ୍ରାମ, ନଦୀଘାଟ, ବନ୍ୟାଞ୍ଚଳ ପ୍ରଭୃତି ଉପରେ ପଡୋଶୀ ରାଜ୍ୟ ଗୁଡିକର ବିବାଦାତ୍ମକ ଅଧିକାର ହଟାଇ ରାଜ୍ୟ ସରକାରଙ୍କର କର୍ତ୍ତୃତ୍ୱାଧୀନକୁ ଆଣିବା ବିଷୟରେ ସବିଶେଷ ଆଲୋଚନା ହୋଇଥିଲା । ବୈଠକରେ ଉପସ୍ଥିତ ଆଜୀବନ ସଭ୍ୟ ତଥା ରାଜସ୍ୱ ମନ୍ତ୍ରୀ ଶ୍ରୀ ଲେଙ୍କା ଉଚ୍ଚସ୍ତରୀୟ ଆନ୍ତଃ ରାଜ୍ୟ ସୀମା କମିଟି ପ୍ରତି ତିନି ମାସରେ ବସି କିପରି ଏହି ସୀମା ବିବାଦାତ୍ମକ ଗ୍ରାମ ଗୁଡିକ ଚିହ୍ନଟ କରି ଏକ ରାଜ୍ୟ ନକ୍ସା ପ୍ରସ୍ତୁତ ହୋଇଛି ତାହା ବର୍ଣ୍ଣନା କରିଥିଲେ ଏବଂ ସଭ୍ୟମାନଙ୍କ ଅବଗତି ନିମନ୍ତେ ଏହି ମ୍ୟାପ୍ ପ୍ରଦର୍ଶିତ ହୋଇଥିଲା । ସୁନ୍ଦରଗଡ ଜିଲ୍ଲାର ସୀମାନ୍ତରେ ବିହାର ସରକାରଙ୍କ ଦ୍ୱାରା ନିର୍ମିତ ଏକ ଫରେଷ୍ଟ ରେଷ୍ଟ ସେଡ୍ କିପରି ଘୁଞ୍ଚାଇ ଦିଆ ଯାଇଛି, ତାହା ମଧ୍ୟ ଆଲୋଚନା ସମୟରେ ପ୍ରକାଶ ପାଇଥିଲା । ଆନ୍ତଃ ରାଜ୍ୟ ସୀମା ନିର୍ଦ୍ଧାରଣ ଦିଗରେ ରାଜସ୍ୱ ବିଭାଗ ସକ୍ରିୟ ଗଠନମୂଳକ ପଦକ୍ଷେପ ନେଉଥିବାରୁ ରାଜସ୍ୱ ମନ୍ତ୍ରୀଙ୍କୁ ସମ୍ମିଳନୀ ତରଫରୁ ସାଧୁବାଦ ଜଣାଇ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା ।

(ଖ) ବାଲେଶ୍ୱର ଜିଲ୍ଲା ସୀମାନ୍ତରେ ଦୁଇଟି ନଦୀ ଘାଟ ପଶ୍ଚିମବଙ୍ଗ ସରକାର ନିଲାମ କରୁଛନ୍ତି ଏବଂ ତାହା ଓଡିଶା ସରକାର ଯେପରି ନିଲାମ କରିପାରିବେ - ସେ ଦିଗରେ ପଦକ୍ଷେପ ନେବା ନିମନ୍ତେ ବାଲେଶ୍ୱର ସଭ୍ୟ ଶ୍ରୀ ଅମରେନ୍ଦ୍ର କୁମାର ଦାସ ଏବଂ ଶ୍ରୀ ବିଶ୍ୱନାଥ ନାୟକ (ଭଦ୍ରକ) ବାଲେଶ୍ୱର ଜିଲ୍ଲାପାଳଙ୍କୁ ଭେଟି ଆଲୋଚନା କରିବେ ବୋଲି ସ୍ଥିର ହେଲା । ସରଜମିନ ତଦନ୍ତ ପୂର୍ବକ ସମ୍ମିଳନୀ ତରଫରୁ ଏ ଦିଗରେ ଉଚିତ ପଦକ୍ଷେପ ନେବା ନିମନ୍ତେ ପ୍ରସ୍ତାବ ଗୃହୀତ ହେଲା ।

(୧୫) ବାର୍ଷିକ ଅଧିବେଶନ :

(କ) ଆଗାମୀ ମାର୍ଚ୍ଚ ୨ ଓ ୩ ରେ କଟକଠାରେ ଅନୁଷ୍ଠିତ ହେବାର ସ୍ଥିର ହେଲା । ପ୍ରଥମ ଦିନ (ମାର୍ଚ୍ଚ ୨ - ଶନିବାର) ବିଚ୍ଛିନ୍ନାଞ୍ଚଳ ସମ୍ପର୍କରେ ଆଲୋଚନା ହେବ । ଏଥିରେ ଯୋଗ ଦେବା ପାଇଁ ପଡୋଶୀ ଚାରୋଟି ରାଜ୍ୟର ଶିକ୍ଷାମନ୍ତ୍ରୀମାନଙ୍କୁ ନିମନ୍ତ୍ରଣ କରାଯିବା ନିମନ୍ତେ ସ୍ଥିର ହେଲା ।

(ଖ) ଦ୍ୱିତୀୟ ଦିନ (ମାର୍ଚ୍ଚ ୩ - ରବିବାର) ଓଡିଶା ଉପରେ ଆଲୋଚନା ହେବ । ଏହି ବୈଠକରେ ଯୋଗ ଦେବା ପାଇଁ ସୀମାନ୍ତ ଅଞ୍ଚଳର ସାଂସଦ, ବିଧାୟକ ଏବଂ ସଂପୃକ୍ତ ଜିଲ୍ଲାପାଳମାନଙ୍କୁ (ଆଲୋଚନାରେ ଭାଗନେବା ନିମନ୍ତେ) ନିମନ୍ତ୍ରଣ କରାଯିବ ।

(ଗ) କଟକ ଇଦ୍‌ଗାହ ପଡିଆରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଅନୁଷ୍ଠିତ

ହୋଇଥିବାରୁ ସେଠାରେ ଉତ୍କଳ ସମ୍ମିଳନୀ ସ୍ମୃତିସ୍ତମ୍ଭ ସ୍ଥାପନ କରାଯିବା ପାଇଁ ସ୍ଥିର ହେଲା । ଏଥିପାଇଁ ଏକ ଆକଳନ ପ୍ରସ୍ତୁତ କରିବା ଏବଂ ଉଦ୍‌ଘାଟନ ପାଇଁ ଆନୁସଙ୍ଗିକ ଦାୟିତ୍ୱ ଶ୍ରୀ କୈଳାସ ଆଚାର୍ଯ୍ୟଙ୍କ ଉପରେ ନ୍ୟସ୍ତ କରାଗଲା । ମଧୁସ୍ମୃତି ସଂସଦର ସମ୍ପାଦକ ଶ୍ରୀ ପାରେଶ୍ୱର ସାହୁଙ୍କ ଉପରେ ଇଦ୍‌ଗାହ ପଡିଆର ସତ୍ତ୍ୱାସତ୍ତ୍ୱ ତଥା ସ୍ଥାନ ନିରୂପଣ ସମ୍ପର୍କୀୟ ଦାୟିତ୍ୱ ନ୍ୟସ୍ତ କରାଗଲା । ଫେବୃୟାରୀ ୧୫ ତାରିଖ ମଧ୍ୟରେ ଏହା ସମ୍ପନ୍ନ ହୋଇ ସ୍ମୃତିପୀଠ ନିର୍ମାଣ ହେଲେ ମାର୍ଚ୍ଚ ୩ ତାରିଖ ବାର୍ଷିକ ଅଧିବେଶନ ସମୟରେ ଉନ୍‌ମୋଚନ କରାଯିବ ବୋଲି ସ୍ଥିର ହେଲା ।

(ଘ) ଓଡିଶାର ବରପୁତ୍ରମାନଙ୍କ ଫଟୋ ଓ କ୍ୟାଲେଣ୍ଡର ପ୍ରକାଶ ପାଇଁ ପୂର୍ବରୁ ଯେଉଁ ପ୍ରସ୍ତାବ ହୋଇଛି, ତାହା କାର୍ଯ୍ୟକାରୀ କରାଯିବା ପାଇଁ ତ୍ୱରାନ୍ୱିତ ପଦକ୍ଷେପ ନେବାକୁ ସ୍ଥିର ହେଲା । ଓଡିଶା ପ୍ରଦେଶ ଗଠନ ହୀରକ ଜୟନ୍ତୀ ବର୍ଷ ପାଳନ ସମ୍ପର୍କୀୟ ପ୍ରସ୍ତାବ ଗୁଡିକ କାର୍ଯ୍ୟକାରୀ କରିବା ପାଇଁ ସମୀକ୍ଷା ପୂର୍ବକ ସମୟ ଭିତ୍ତିକ କାର୍ଯ୍ୟାନୁଷ୍ଠାନ ନିମନ୍ତେ ସର୍ବସମ୍ମତ ମତ ପ୍ରକାଶ ପାଇଲା ।

(ଙ) ଉତ୍କଳ ସମ୍ମିଳନୀ ତରଫରୁ ଜଣେ ପ୍ରତିନିଧିଙ୍କୁ ରାଜ୍ୟସଭାକୁ ନିର୍ବାଚିତ କରାଯିବା ପାଇଁ ବିଧାନ ସଭାରେ ଥିବା ବିଭିନ୍ନ ରାଜନୈତିକ ଦଳର ନେତୃବୃନ୍ଦଙ୍କ ସହିତ ଆଲୋଚନା କରିବା ପାଇଁ ଏକ ପ୍ରତିନିଧି ମଣ୍ଡଳ ଯିବେ ବୋଲି ସ୍ଥିର ହେଲା । ଏଥିପାଇଁ ସଂପୃକ୍ତ ସମସ୍ତଙ୍କୁ ପତ୍ର ଲେଖିବା ପାଇଁ ସର୍ବସମ୍ମତ ପ୍ରସ୍ତାବ ଗୃହୀତ ହେଲା ।

ପରିଶେଷରେ ସଭାପତିଙ୍କୁ ଧନ୍ୟବାଦ ସହ ସଭା ସାଙ୍ଗ ହେଲା ।

ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ସଚିବ    ବସନ୍ତ କୁମାର ପାଣିଗ୍ରାହୀ, ମହାସଚିବ    ହରିହର ବାହିନୀପତି, ସଭାପତି

## ତା-୯-୩-୯୬ ରିଖରେ ଭୁବନେଶ୍ୱର ସ୍ୱତନ୍ତ୍ର ସର୍କିଟ ହାଉସ୍‌ଠାରେ ଅନୁଷ୍ଠିତ କାର୍ଯ୍ୟକାରୀ ସମିତି ବୈଠକ ବିବରଣୀ

### ସମୟ - ଅପରାହ୍ନ ୪ ଟା

ଉପସ୍ଥିତ ସଭ୍ୟ :

(୧) କୃଷ୍ଣପ୍ରସାଦ ମହାପାତ୍ର, ଉପସଭାପତି (୨) ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଉପସଭାପତି (୩) ଆଚାର୍ଯ୍ୟ ଭାବାନନ୍ଦ, କୋଷାଧ୍ୟକ୍ଷ (୪) ବଳରାମ ମହାନ୍ତି, ସ୍ୱତନ୍ତ୍ର ନିମନ୍ତ୍ରିତ (୫) ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ସଚିବ (୬) ବସନ୍ତ କୁମାର ପାଣିଗ୍ରାହୀ, ମହାସଚିବ ।

ଉପସଭାପତି ଜଷ୍ଟିସ୍ ଶ୍ରୀକୃଷ୍ଣ ପ୍ରସାଦ ମହାପାତ୍ରଙ୍କ ପୌରୋହିତ୍ୟରେ ବୈଠକ ଅନୁଷ୍ଠିତ ହୋଇଥିଲା ।

(୧) ପୂର୍ବ ବୈଠକର ବିବରଣୀ ଉପରେ କରାଯାଇଥିବା କାର୍ଯ୍ୟାନୁଷ୍ଠାନ ସମ୍ପର୍କରେ ଆଲୋଚନା କରାଯାଇ ସମୀକ୍ଷା କରାଯାଇଥିଲା ।

(୨) ବାର୍ଷିକ ଅଧିବେଶନ : ଅନିବାର୍ଯ୍ୟ କାରଣରୁ ଘୁଞ୍ଚା ଯାଇ ମାର୍ଚ୍ଚ ୩୧ ଓ ଅପ୍ରେଲ୍ ପହିଲାରେ ଅନୁଷ୍ଠିତ ହେବାକୁ ଥିବା ବାର୍ଷିକ ଅଧିବେଶନ ସମ୍ପର୍କରେ ଆଲୋଚନା କରାଯାଇଥିଲା । ମାର୍ଚ୍ଚ ୩୧ ପୂରାଦିନ ଏବଂ ଅପ୍ରେଲ୍ ପହିଲା ମଧ୍ୟାହ୍ନ ଭୋଜନ ପର୍ଯ୍ୟନ୍ତ ଅଧିବେଶନ ସମୟସୀମା ସ୍ଥିର ହେଲା । ଆଲୋଚନାର ବିଷୟବସ୍ତୁ ଏବଂ ଉଦ୍‌ଘାଟକ, ମୁଖ୍ୟ ଅତିଥି, ବକ୍ତା ଓ ଆଲୋଚକ ଭାବେ କେଉଁମାନଙ୍କୁ ନିମନ୍ତ୍ରଣ କରାଯିବ, ତାହା ସବିଶେଷ ଆଲୋଚନା କରାଯାଇଥିଲା । ପୁରୀ ଗଜପତି ମହାରାଜା, ଓଡିଶାର ମୁଖ୍ୟମନ୍ତ୍ରୀ, ବିରୋଧୀ ଦଳ ନେତା, ଓଡିଶାର ବିଶ୍ୱବିଦ୍ୟାଳୟମାନଙ୍କର ପୂର୍ବତନ ଏବଂ ସାଂପ୍ରତିକ କୁଳପତିଗଣ, ବିଧାନ ସଭା ବାଚସ୍ପତି, ଓଡିଶା ସାହିତ୍ୟ ଏକାଡେମୀ ସଭାପତି, କେନ୍ଦ୍ର ସାହିତ୍ୟ ଏକାଡେମୀ ଉପସଭାପତି, ଶିକ୍ଷାମନ୍ତ୍ରୀ, ସାଂସ୍କୃତିମନ୍ତ୍ରୀ, ରାଜସ୍ୱମନ୍ତ୍ରୀ, ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା, ଶ୍ରୀ ବିଜୟ କୁମାର ମହାପାତ୍ର, (ଭାଷା ତତ୍ତ୍ୱବିଦ୍), ଶ୍ରୀ ପୁରୁଷୋତ୍ତମ ନାଥ ଶର୍ମା (ଦେବଗଡ), ଶ୍ରୀ ପ୍ରୟାଗଦତ୍ତ ଯୋଗୀ (ଖଡିଆଳ), ପୂର୍ବତନ ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାସ, ଶ୍ରୀ ତୀର୍ଥାନନ୍ଦ ମିଶ୍ର (ଫୁଲବାଣୀ), ପୂର୍ବତନ ମୁଖ୍ୟ ଶାସନ ସଚିବ ଶ୍ରୀ ରମାକାନ୍ତ ମିଶ୍ର, ଶ୍ରୀ ମହେଶ ମହାପାତ୍ର, ଶ୍ରୀ ଚରଣ ମହାନ୍ତି, ଡା: ଭାବଗ୍ରାହୀ ମହାପାତ୍ର (ରାଉତକେଲା), ଶ୍ରୀ ହିମାଂଶୁ ଶେଖର ନନ୍ଦୀ (ଭଦ୍ରକ-ବାଲେଶ୍ୱର) ପ୍ରଭୃତିଙ୍କୁ ନିମନ୍ତ୍ରଣ କରାଯିବ ବୋଲି ସ୍ଥିର ହେଲା । ଅଣରାଜନୈତିକ ଭାଷା-ଶିକ୍ଷା-ସଂସ୍କୃତି କେନ୍ଦ୍ରରେ କୃତୀ ବ୍ୟକ୍ତିମାନଙ୍କୁ ଅଧିକ ସଂଖ୍ୟାରେ ସଂପୃକ୍ତ କରିବା ପାଇଁ ନୀତିଗତ ଭାବେ ସ୍ଥିର ହେଲା ।

(୩) ଇଦ୍‌ଗାହ ପଡିଆରେ ଉତ୍କଳ ସମ୍ମିଳନୀ ପ୍ରଥମ ଅଧିବେଶନ ସ୍ମୃତିସ୍ତମ୍ଭ ନିର୍ମାଣ ସମ୍ପର୍କରେ ଆଲୋଚନା କରାଯାଇ ଯେଉଁ ବ୍ୟକ୍ତି ବିଶେଷ ତଥା କର୍ମକର୍ତ୍ତାଙ୍କ ମାଧ୍ୟମରେ ଏହା ସୁଚାରୁରୂପେ ସମ୍ପାଦନ କରିବା ସମ୍ଭବପର, ସେମାନଙ୍କ ସହ ମହାସଚିବ ଏବଂ କଟକରେ ଅବସ୍ଥାପିତ ସଭ୍ୟମାନେ ଯୋଗାଯୋଗ କରି ବିହିତ କାର୍ଯ୍ୟାନୁଷ୍ଠନ ଗ୍ରହଣ କରିବେ ବୋଲି ସ୍ଥିର ହେଲା ।

(୪) ଉତ୍କଳ ସମ୍ମିଳନୀର ମୁଖପତ୍ର 'ଉତ୍କଳ ସମ୍ମିଳନୀ ବାର୍ତ୍ତା'ର ଉଦ୍‌ଘାଟନୀ ସଂଖ୍ୟା ବାର୍ଷିକ ଅଧିବେଶନ ବେଳକୁ ପ୍ରକାଶ ପାଇବ ବୋଲି ସ୍ଥିର ହୋଇ ମହାସଚିବଙ୍କୁ ବିହିତ କାର୍ଯ୍ୟାନୁଷ୍ଠାନ ପାଇଁ ଦାୟିତ୍ୱ ଦିଆଗଲା । ଏହା ଆଠ ପୃଷ୍ଠା ବିଶିଷ୍ଟ ମାସିକ ବୁଲେଟିନ୍ ଭାବେ ପ୍ରକାଶ ପାଇବ ବୋଲି ସ୍ଥିର ହେଲା ।

(୫) ସ୍ୱର୍ଗତ ପଣ୍ଡିତ ବାଇକୋଳି ମହାପାତ୍ରଙ୍କ ଲିଖିତ 'ଓଡିଆ ଭାଷା ଆନ୍ଦୋଳନ ଇତିହାସ'

ସଂଗ୍ରହ କରି ତାହାର ପୁନଃମୁଦ୍ରଣ ସହ ଉତ୍କଳ ସମ୍ମିଳନୀ ଇତିହାସ ପ୍ରଣୟନ ପାଇଁ ପଦକ୍ଷେପ ନିଆଯିବ ବୋଲି ସ୍ଥିର ହେଲା । ଜଣେ ଇତିହାସ ଅଧ୍ୟାପକ-ଗବେଷକଙ୍କୁ ଏହି ଦାୟିତ୍ୱ ଦେବାକୁ କୋଷାଧ୍ୟକ୍ଷ ଆଚାର୍ଯ୍ୟ ଭାବାନନ୍ଦ ପ୍ରସ୍ତାବ ଦେଲେ ଏବଂ ତାହା ଗୃହୀତ ହୋଇଥିଲା ।

(୬) 'ଗୋଦାବରୀଶ ସାହିତ୍ୟ ସଂସଦ' କିମ୍ବା ଅନ୍ୟ କୌଣସି ରାଜ୍ୟସ୍ତରୀୟ ସର୍ଭିସ୍ ଆସୋସିଏସନ୍‌ର ଅଟ୍ଟାଳିକା ପରିସର ମଧ୍ୟରେ ଏକ ପ୍ରକୋଷ୍ଠ ଭଡା ସୂତ୍ରରେ ନେଇ ମୁଖ୍ୟ କାର୍ଯ୍ୟାଳୟ ଅବସ୍ଥାପିତ ହେବା ନିମନ୍ତେ ପ୍ରସ୍ତାବ ଗୃହୀତ ହେଲା ।

(୭) ଏକ 'ଓଡିଆ ପତ୍ର ବିନିମୟ ଶିକ୍ଷା ପ୍ରସାର କାର୍ଯ୍ୟକ୍ରମ' ସମ୍ମିଳନୀ ତରଫରୁ ଭବିଷ୍ୟତରେ କାର୍ଯ୍ୟକାରୀ ହେବା ନିମନ୍ତେ ନୀତିଗତ ଭାବେ ସ୍ଥିର ହେଲା । ଏହି ଉଦ୍ଦେଶ୍ୟରେ ଆବଶ୍ୟକ ପାଣ୍ଠି ବ୍ୟବସ୍ଥା ହେବାପରେ ଠିକଣା ସମୟରେ ଉଚିତ ପଦକ୍ଷେପ ନେବା ପାଇଁ ପ୍ରସ୍ତାବ ଗୃହୀତ ହେଲା । ଏଥିପାଇଁ କେତେକ ଶିକ୍ଷାନୁଷ୍ଠାନମାନଙ୍କ ସହ ଯୋଗାଯୋଗ କରିବା ନିମନ୍ତେ ନିଷ୍ପତ୍ତି ନିଆଗଲା ।

(୮) ୧୯୯୬-୯୭ ଆର୍ଥିକ ବର୍ଷ ପାଇଁ ବଜେଟ୍ ଅଟକଳ ଉପରେ ସବିଶେଷ ଆଲୋଚନା କରାଯାଇ ନିମ୍ନମତେ ଆକଳନ କରାଗଲା :

**ଆୟ**

| | | |
|---|---|---|
| ୧. | ସରକାରୀ ଅନୁଦାନ | ୧୦୦୦୦.୦୦ |
| ୨. | ସଭ୍ୟଚାନ୍ଦା (୫୦ ଜଣ-ଆଜୀବନ ସଭ୍ୟ ସଂଗ୍ରହ) | ୫୦୦୦.୦୦ |
| ୩. | ପ୍ରକାଶନୀ ବିକ୍ରୟ | ୮୦୦୦.୦୦ |
| ୪. | ପ୍ରକଳ୍ପ ଆୟ | ୧୦୦୦୦.୦୦ |
| ୫. | ଅନ୍ୟାନ୍ୟ ଅନୁଦାନ | ୧୦୦୦୦.୦୦ |
| | | ୪୩୦୦୦.୦୦ |

**ବ୍ୟୟ**

| | | |
|---|---|---|
| ୧. | ଘରଭଡା | ୬୦୫୦.୦୦ |
| ୨. | କାର୍ଯ୍ୟାଳୟ ପରିଚାଳନା | ୨୫୦୦.୦୦ |
| ୩. | ପୋଷ୍ଟାଲ୍, ଟେଲିଫୋନ୍ | ୩୦୦୦.୦୦ |
| ୪. | ଯାତାୟାତ | ୪୦୦୦.୦୦ |
| ୫. | କାର୍ଯ୍ୟକ୍ରମ | ୧୨୫୦୦.୦୦ |
| ୬. | ଅନ୍ୟାନ୍ୟ | ୫୦୦୦.୦୦ |
| | | ୪୩୦୦୦.୦୦ |

ଆୟ ଦିଗରେ ସଂପୃକ୍ତ ବ୍ୟକ୍ତି ଓ ସଂସ୍ଥା ସହ କୋଷାଧ୍ୟକ୍ଷ ଏବଂ କେନ୍ଦ୍ରୀୟ ସଚିବ ତତ୍ପରତା ପୂର୍ବକ ଯୋଗାଯୋଗ କରିବେ ବୋଲି ସ୍ଥିର ହେଲା ।

ଶେଷରେ ସଭାପତିଙ୍କୁ ଧନ୍ୟବାଦ ଜ୍ଞାପନ ପୂର୍ବକ ସଭା ସାଙ୍ଗ ହେଲା ।

ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ସଚିବ     ବସନ୍ତ କୁମାର ପାଣିଗ୍ରାହୀ, ମହାସଚିବ     ହରିହର ବାହିନୀପତି, ସଭାପତି

## ତା-୨୩-୬-୯୬ ରିଖରେ ଭୁବନେଶ୍ୱରସ୍ଥ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟଠାରେ ଅନୁଷ୍ଠିତ କାର୍ଯ୍ୟକାରୀ ସମିତି ବୈଠକ ବିବରଣୀ

## ସମୟ - ଅପରାହ୍ନ ୩ ଟା

ଉପସ୍ଥିତ ସଭ୍ୟ :

(୧) କୃଷ୍ଣପ୍ରସାଦ ମହାପାତ୍ର, ଉପସଭାପତି (୨) ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଉପସଭାପତି (୩) ବସନ୍ତ କୁମାର ପାଣିଗ୍ରାହୀ, ମହାସଚିବ (୪) ମନୋରମା ମହାପାତ୍ର, ସଭ୍ୟା (୫) ବଳରାମ ମହାନ୍ତି, ସ୍ୱତନ୍ତ୍ର ନିମନ୍ତ୍ରିତ (୬) କୈଳାସ ଆଚାର୍ଯ୍ୟ, ସ୍ୱତନ୍ତ୍ର ନିମନ୍ତ୍ରିତ (୭) ଆଚାର୍ଯ୍ୟ ଭାବାନନ୍ଦ, କୋଷାଧ୍ୟକ୍ଷ (୮) ଅରବିନ୍ଦ ପଟ୍ଟନାୟକ, ସ୍ୱତନ୍ତ୍ର ନିମନ୍ତ୍ରିତ (୯) ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ସଚିବ ।

ଉପସଭାପତି ନ୍ୟାୟମୂର୍ତ୍ତି ଶ୍ରୀ କୃଷ୍ଣପ୍ରସାଦ ମହାପାତ୍ରଙ୍କ ସଭାପତିତ୍ୱରେ କାର୍ଯ୍ୟକାରୀ ସମିତି ବୈଠକ ନିର୍ଦ୍ଦିଷ୍ଟ ସମୟରେ ସମ୍ମିଳନୀ କାର୍ଯ୍ୟାଳୟଠାରେ ଅନୁଷ୍ଠିତ ହୋଇଥିଲା ।

ଗତ ୯-୩-୯୬ ରେ ଅନୁଷ୍ଠିତ ବୈଠକର ବିବରଣୀ ପାଠ କରାଯାଇ ଠିକ୍ ଥିବାରୁ ଦୃଢ଼ୀକୃତ ହୋଇଥିଲା ।

ପୂର୍ବ ବୈଠକମାନଙ୍କରେ ଗୃହୀତ ପ୍ରସ୍ତାବ ଗୁଡ଼ିକର ସମୀକ୍ଷା କରାଯାଇ ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନ ଗ୍ରହଣ ନିମନ୍ତେ ସ୍ଥିର ହେଲା ।  ଏହି ପରିପ୍ରେକ୍ଷୀରେ ନିମ୍ନ ପ୍ରସ୍ତାବଦ୍ୱୟ ସର୍ବସମ୍ମତିକ୍ରମେ ଗୃହୀତ ହେଲା ।

ପ୍ରଥମ ପ୍ରସ୍ତାବ :  ଓଡିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ପାଇଁ ଉତ୍କଳ ସମ୍ମିଳନୀର ସୃଷ୍ଟି ।  ସର୍ବଭାରତୀୟ ରାଜନୈତିକ କ୍ଷେତ୍ରରେ ଓଡିଶା ପ୍ରତି ଘୋର ଅନ୍ୟାୟ ଓ ଅବହେଳା ପ୍ରଦର୍ଶନ କରାଯାଉଥିବାରୁ ଉତ୍କଳ ସମ୍ମିଳନୀ ଗଭୀର ଉଦ୍‌ବେଗ ଓ କ୍ଷୋଭ ପ୍ରକାଶ କରୁଛନ୍ତି ।

ବର୍ତ୍ତମାନ ଦେଖା ଯାଉଛି, କେତେକ ରାଜନୈତିକ ଦଳ ଅନ୍ୟ ରାଜ୍ୟର ଭିନ୍ନ ଭାଷାଭାଷୀ ବ୍ୟକ୍ତିଙ୍କୁ ନିମନ୍ତ୍ରଣ କରି ଓଡିଶା ରାଜ୍ୟ ନିମନ୍ତେ ସମ୍ବିଧାନରେ ଉଦ୍ଦିଷ୍ଟ ଥିବା ରାଜ୍ୟ ସଭା ଓ ଲୋକ ସଭା ସଭ୍ୟପଦ ପ୍ରାର୍ଥୀ ଭାବେ ଓଡିଶାର ପ୍ରତିନିଧିତ୍ୱ କରିବା ପାଇଁ ମନୋନୀତ

କରୁଛନ୍ତି । ଏହା ସାମ୍ବିଧାନିକ ଉଦ୍ଦେଶ୍ୟ ଓ ଚିନ୍ତାଧାରାର ସମ୍ପୂର୍ଣ୍ଣ ପରିପନ୍ଥୀ । ସମ୍ବିଧାନରେ ଓଡିଶା ପାଇଁ ଯେଉଁ ବ୍ୟବସ୍ଥା ଅଛି, ଏହା ଦ୍ୱାରା ତାହାର ବିରୁଦ୍ଧା ଚରଣ କରାଯାଉଅଛି । ଏହା ଓଡିଆ ଭାଷା, ଜାତୀୟତା, ସ୍ୱାଭିମାନ, ସମ୍ମାନ ଓ ସମୂହ ସ୍ୱାର୍ଥ ପ୍ରତି ଘୋର ଅବମାନନା ଓ କୁଠାରାଘାତ କରୁଅଛି । ସର୍ବଭାରତୀୟ ସ୍ତରରେ ରାଜନୈତିକ କ୍ଷେତ୍ରରେ ଓଡିଶାରେ ଯୋଗ୍ୟ ବ୍ୟକ୍ତିଙ୍କର ଅଭାବ ନାହିଁ । ଏହାଦ୍ୱାରା ଓଡିଶାବାସୀ ଜାତୀୟସ୍ତରରେ ନ୍ୟାଯ୍ୟ ସମ୍ବିଧାନିକ ଅଧିକାରରୁ ବଞ୍ଚିତ ହେଉଛନ୍ତି ।

ଭବିଷ୍ୟତରେ ଯଦି ରାଜନୈତିକ ଦଳମାନେ ଏପରି କରନ୍ତି, ତେବେ ଉତ୍କଳ ସମ୍ମିଳନୀ ଏହାର ଦୃଢ଼ ବିରୋଧ କରିବ ।

ଆଗାମୀ ଦିନମାନଙ୍କରେ ଏହିପରି ଓଡିଆ ସ୍ୱାର୍ଥ ବିରୋଧୀ କାର୍ଯ୍ୟ କରାଗଲେ ତାହାର ପ୍ରତିରୋଧ କରିବା ପାଇଁ ଓଡିଶାର ଜନସାଧାରଣ ଓ ଯୁବ ସମାଜ ପ୍ରସ୍ତୁତ ରହିବାକୁ ସମ୍ମିଳନୀ ଆହ୍ୱାନ କରୁଛି ।

ଦ୍ୱିତୀୟ ପ୍ରସ୍ତାବ : ଲୋକସଭା ଓ ରାଜ୍ୟସଭାରେ ଓଡିଶା ତରଫରୁ ପ୍ରତିନିଧିତ୍ୱ କରୁଥିବା ଅନ୍ୟ ରାଜ୍ୟବାସୀ ଶ୍ରୀ ପି.ଭି. ନରସିଂହ ରାଓ ଏବଂ ଶ୍ରୀ ଏସ୍.ଆର.ବୋମାଇ ଇସ୍ତଫା ଦିଅନ୍ତୁ ଏବଂ ଓଡିଶାର ସଂପୃକ୍ତ ରାଜନୈତିକ ଦଳମାନେ ଓଡିଶାର ସ୍ୱାଭିମାନ ରକ୍ଷା କରିବାରେ ବିଫଳ ହୋଇଥିବାରୁ ଜାତି ନିକଟରେ କ୍ଷମା ଭିକ୍ଷା କରନ୍ତୁ ।

ଓଡିଶା ତରଫରୁ ଶ୍ରୀ ଏସ୍.ଆର.ବୋମାଇ କେନ୍ଦ୍ର ମନ୍ତ୍ରୀ ମଣ୍ଡଳରେ ପ୍ରତିନିଧିତ୍ୱ କରୁଥିବାଠାରୁ ବଳି ଆଉ କଣ ଅଧିକ ଲଜ୍ଜାଜନକ ଘଟଣା ହୋଇପାରେ ବୋଲି ପ୍ରଶ୍ନ ଉଠାଇ ସମ୍ମିଳନୀ ଗଭୀର କ୍ଷୋଭ ପ୍ରକାଶ କରନ୍ତି ।

ଏମାନଙ୍କ କ୍ଷେତ୍ରରେ ଆବଶ୍ୟକୀୟ ନୀତି ଓ ନିୟମାବଳୀ ଉଲ୍ଲଙ୍ଘନ କରାଯାଇଥିବାର ପ୍ରମାଣ ମିଳୁଛି । ଏହାର ଉପଯୁକ୍ତ ଅନୁସନ୍ଧାନ କେନ୍ଦ୍ରୀୟ ସଂସ୍ଥା ଦ୍ୱାରା କରାଯାଉ । ସର୍ବୋପରି ଓଡିଆଙ୍କ ଜାତୀୟ ଜୀବନର ସ୍ୱାଭିମାନ ପ୍ରତି ଏହା ଏକ ଆହ୍ୱାନ । ଏଥିପ୍ରତି ରାଜ୍ୟବାସୀ ସଜାଗ ରହିବା ପାଇଁ ସମ୍ମିଳନୀ ଦୃଢ଼ ଭାବେ ଚେତାଇ ଦେଉଛି ।

ତୃତୀୟ ପ୍ରସ୍ତାବ : ପ୍ରସ୍ତାବିତ 'ଓଡିଶାର ଅର୍ଥନୈତିକ ଉନ୍ନୟନ' ଆଲୋଚନାଚକ୍ର ଅନୁଷ୍ଠିତ ହେବା ସମ୍ପର୍କରେ ଉପସଭାପତି ଶ୍ରୀ ବଳିପାତ୍ର, ସଭ୍ୟ ଶ୍ରୀ ସାତକଡି ହୋତା ଏବଂ ସଚିବ ଡ: ଶ୍ରୀଚନ୍ଦନ ଉତ୍କଳ ବିଶ୍ୱବିଦ୍ୟାଳୟର ସଂପୃକ୍ତ କର୍ତ୍ତୃପକ୍ଷଙ୍କ ସହ ଯୋଗାଯୋଗ କରି ଦିନ ଧାର୍ଯ୍ୟ ପୂର୍ବକ ବିହିତ ବ୍ୟବସ୍ଥା ନିମନ୍ତେ ପଦକ୍ଷେପ ନେବେ । ଏତଦ୍ ବ୍ୟତୀତ ''ମାନବ ସମ୍ବଳ ପରିପ୍ରେକ୍ଷୀରେ ଓଡିଶାରେ ଓଡିଆଙ୍କ ସ୍ୱାର୍ଥରକ୍ଷା'' ବିଷୟ ବସ୍ତୁ ଉପରେ ଅନ୍ୟ ଏକ ଆଲୋଚନା ଚକ୍ର ଅନୁଷ୍ଠିତ ହେବା ପାଇଁ ସ୍ଥିର ହେଲା ।

ଚତୁର୍ଥ ପ୍ରସ୍ତାବ : ଗତ ବାର୍ଷିକ ଅଧିବେଶନରେ ଆଗତ ପ୍ରସ୍ତାବ ଗୁଡିକ ଯାଞ୍ଚ ଓ

ସମୀକ୍ଷା କରିବା ପାଇଁ ସ୍କ୍ରିନିଂ କମିଟିର ବୈଠକ ଆସନ୍ତା ଜୁନ୍ ୨୮ ତାରିଖ ସନ୍ଧ୍ୟା ୫ ଘଣ୍ଟା ସମୟରେ କଟକ ଗୋପବନ୍ଧୁ ଭବନଠାରେ ଅନୁଷ୍ଠିତ ହୋଇ ପ୍ରସ୍ତାବ ଗୁଡିକ ଉପରେ ନିଷ୍ପତ୍ତି ଗ୍ରହଣ କରାଯିବାକୁ ସ୍ଥିର ହେଲା । ମହାସଚିବ ଉକ୍ତ ବୈଠକ ଡକାଇ ବିହିତ ପଦକ୍ଷେପ ନେବା ନିମନ୍ତେ ପରାମର୍ଶ ଦିଆଗଲା ।

ପଞ୍ଚମ ପ୍ରସ୍ତାବ : ପ୍ରବାସୀ ଭାରତୀୟ - ଓଡିଆମାନେ ଉତ୍କଳ ସମ୍ମିଳନୀର ସଭ୍ୟ ହେବା ପାଇଁ ଆଗ୍ରହ ପ୍ରକାଶ କରୁଥିବାରୁ ସେମାନଙ୍କୁ ପୃଷ୍ଠପୋଷକ ସଭ୍ୟ କିମ୍ବା ଆଜୀବନ ସଭ୍ୟ ରୂପେ ନେବା ବିଷୟରେ ବିଚାର ହୋଇଥିଲା । ସମ୍ବିଧାନରେ ଆଜୀବନ ସଭ୍ୟ ଚାନ୍ଦା ୧୦୦ ଟଙ୍କା ଏବଂ ପୃଷ୍ଠପୋଷକ ସଭ୍ୟ ଚାନ୍ଦା ୫୦୦ ଟଙ୍କା ରଖାଯାଇଛି । ପ୍ରବାସୀ ଭାରତୀୟ - ଓଡିଆମାନେ ସମ୍ମିଳନୀର ସଭ୍ୟ ହେଲେ ଅନ୍ୟୂନ ଏକ ହଜାର ଟଙ୍କା ବା ଚାଳିଶ ଡଲାର୍ ସ୍ୱଚ୍ଛନ୍ଦରେ ଦେଇ ପାରିବାର ସମ୍ଭାବନା ଥିବାରୁ ପ୍ରତ୍ୟେକ ସଭ୍ୟ, ଆଜୀବନ ସଭ୍ୟ ଚାନ୍ଦା ବାବଦକୁ ୧୦୦ ଟଙ୍କା ଏବଂ ସ୍ୱତନ୍ତ୍ର ଅନୁଦାନ ଭାବେ ୯୦୦ ଟଙ୍କା, ଏପରି ୧୦୦୦ ଟଙ୍କା ବା ଡଲାର୍‌ରେ ସମତୁଲ୍ ଅର୍ଥ ଦେବା ପାଇଁ ସ୍ଥିର ହେଲା । ଆଗ୍ରହୀ ପ୍ରବାସୀ ଭାରତୀୟ - ଓଡିଆ ଭାଇ ମାନଙ୍କୁ ଏହି ମର୍ମରେ ଜଣାଇ ଦେବା ପାଇଁ ପରାମର୍ଶ ଦିଆଗଲା ।

ଷଷ୍ଠ ପ୍ରସ୍ତାବ : ୧୯୯୫-୯୬ ଆର୍ଥିକ ବର୍ଷର ଆୟ ବ୍ୟୟ ଫର୍ଦ୍ଦ ଆଲୋଚନା କରାଯାଇ ଗୃହୀତ ହେଲା । ଏହାକୁ ମହାସଚିବ ସମୀକ୍ଷା (ଅଡିଟ୍) କରାଇ ନେବା ପାଇଁ ପରାମର୍ଶ ଦିଆଗଲା ।

ସପ୍ତମ ପ୍ରସ୍ତାବ : ସଂସ୍କୃତି ବିଭାଗରୁ ମିଳିବାକୁ ଥିବା ପୌନପୌନିକ ଅନୁଦାନ ଏବଂ ରାଜସ୍ୱ ବିଭାଗରୁ ଓଡିଆ ବ୍ୟାକରଣ ପାଇଁ ମିଳିବାକୁ ଥିବା ଅଣ ପୌନପୌନିକ ଅନୁଦାନ ସମ୍ପର୍କରେ ଆଲୋଚନା ହୋଇଥିଲା । ଏହି ଦୁଇଟି ଅନୁଦାନ ଏ ପର୍ଯ୍ୟନ୍ତ ମିଳିନାହିଁ । ପଣ୍ଡିତ ନୀଳକଣ୍ଠ ଦାସଙ୍କ 'ଓଡିଆ ବ୍ୟାକରଣ' ଛପାଇବା ବିଷୟରେ ଆଲୋଚନା ହେଲା । ଏହାର ପାଣ୍ଡୁଲିପି ସଂଗୃହୀତ ହୋଇ ଗଚ୍ଛିତ ଥିବା କଥା, କୋଷାଧ୍ୟକ୍ଷ ଆଚାର୍ଯ୍ୟ ଭାବାନନ୍ଦ ପ୍ରକାଶ କରିବା ସାଙ୍ଗକୁ ଉପସଭାପତି ଶ୍ରୀ ବକ୍ସିପାତ୍ର ପଣ୍ଡିତ ନୀଳକଣ୍ଠ ସ୍ମୃତି ସଂସଦ ପାଣ୍ଡୁଲିପି ଆଣି ଏହି ବ୍ୟାକରଣ ପୁସ୍ତକ ଛପାଇ ଥିବା ବିଷୟ ବୈଠକରେ ଉତ୍‌ଥାପନ କରିଥିଲେ । ଆଲୋଚନା ଦ୍ୱାରା ସ୍ଥିର ହେଲା ରାଜସ୍ୱ ବିଭାଗରୁ ପାଣ୍ଠି ମିଳିବା ପରେ ଉତ୍କଳ ସମ୍ମିଳନୀ କର୍ତ୍ତୃତ୍ୱ ଏବଂ ଆନୁକୂଲ୍ୟରେ ଏହି ବ୍ୟାକରଣ ବହି ଛପା ଓ ପ୍ରକାଶନ କରାଯାଇପାରେ । ପୂର୍ବରୁ ଡକ୍ଟର ବାସୁଦେବ ନନ୍ଦଙ୍କୁ ସାଂପ୍ରତିକ- ସର୍ବ ଆଞ୍ଚଳିକ- ସାର୍ବଜନୀନ ଓଡିଆ ବ୍ୟାକରଣଟିଏ ସଂକଳନ କରିବା ପାଇଁ ଦାୟିତ୍ୱ ଦିଆଯାଇଛି । ଏହା ମଧ୍ୟ ଅର୍ଥ ଆକଳନ ପରିସର ମଧ୍ୟରେ ନିର୍ବାହିତ ହେବା ପାଇଁ ଉଦ୍ୟମ ଅବ୍ୟାହତ ରହିବାକୁ ସ୍ଥିର ହେଲା ।

ଅଷ୍ଟମ ପ୍ରସ୍ତାବ : ସମ୍ମିଳନୀର ନିୟମାବଳୀ ୧୧ ନିୟମ ଅନୁଯାୟୀ କାର୍ଯ୍ୟକାରୀ

ସମିତିର ଯେଉଁ ସଭ୍ୟମାନେ କ୍ରମାଗତ ଭାବେ ସମିତିର ବୈଠକରେ ନିମନ୍ତ୍ରଣ ସତ୍ତ୍ୱେ ବିନା କାରଣରେ ଅନୁପସ୍ଥିତ ରହି ଆସୁଛନ୍ତି, ତାଙ୍କ ସଭ୍ୟପଦ କଟାଯିବା ପାଇଁ ସ୍ଥିରହେଲା ।

ଜୁଲାଇ ମାସ ପ୍ରଥମ ପକ୍ଷରେ କାର୍ଯ୍ୟକାରୀ ସମିତି ବସି ଗୃହୀତ ପ୍ରସ୍ତାବଗୁଡିକର କାର୍ଯ୍ୟକାରିତା ସମ୍ପର୍କରେ ଅନୁଧ୍ୟାନ ଓ ସମୀକ୍ଷା କରିବା ସ୍ଥିର ହେଲା ।

ପରିଶେଷରେ ସଭାପତିଙ୍କୁ ଧନ୍ୟବାଦ ଅର୍ପଣ ପୂର୍ବକ ବୈଠକ ସାଙ୍ଗ ହେଲା ।

ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ସଚିବ　　　　　　କୃଷ୍ଣପ୍ରସାଦ ମହାପାତ୍ର, ସଭାପତି

## ତା-୨୫-୨-୯୭ ରିଖରେ ଭୁବନେଶ୍ୱରସ୍ଥ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟଠାରେ ଅନୁଷ୍ଠିତ କାର୍ଯ୍ୟକାରୀ ସମିତି ବୈଠକ ବିବରଣୀ

### ସମୟ - ପୂର୍ବାହ୍ନ ୩ ଟା

ଉପସ୍ଥିତ ସଭ୍ୟ :

(୧) ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଉପସଭାପତି (୨) ବସନ୍ତ କୁମାର ପାଣିଗ୍ରାହୀ, ମହାସଚିବ (୩) ପଦ୍ମଚରଣ ନାୟକ, ସ୍ୱତନ୍ତ୍ର ନିମନ୍ତ୍ରିତ (୪) ସୁରେନ୍ଦ୍ର ମୋହନ ପଣ୍ଡା, ସ୍ୱତନ୍ତ୍ର ନିମନ୍ତ୍ରିତ (୫) ବଳରାମ ମହାନ୍ତି, ସ୍ୱତନ୍ତ୍ର ନିମନ୍ତ୍ରିତ (୬) ଆଚାର୍ଯ୍ୟ ଭାବାନନ୍ଦ, କୋଷାଧ୍ୟକ୍ଷ (୭) ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ସଚିବ (୮) ଶ୍ରୀ ଚରଣ ସ୍ୱାଇଁ, ସ୍ୱତନ୍ତ୍ର ନିମନ୍ତ୍ରିତ (୯) ଇଂ ଅମରେନ୍ଦ୍ର କୁମାର ଦାସ, ସଭ୍ୟ ।

ଉପସଭାପତି ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ଅଧ୍ୟକ୍ଷତାରେ ବୈଠକ ବସିଥିଲା ।

ଗତ ୨୩-୬-୯୬ ରେ ଅନୁଷ୍ଠିତ ବୈଠକ ବିବରଣୀ ପାଠ କରାଯାଇ ଠିକ୍ ଥିବାରୁ ଦୃଢ଼ୀକୃତ କରାଗଲା ଏବଂ ଗୃହୀତ ପ୍ରସ୍ତାବ ଗୁଡିକ ଉପରେ କି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଛି, ସମୀକ୍ଷା କରାଗଲା ।

୧. କୋଷାଧ୍ୟକ୍ଷ ଆଚାର୍ଯ୍ୟ ଭାବାନନ୍ଦ ତାଙ୍କର ଆମେରିକା ଗସ୍ତ ସମୟରେ ପ୍ରବାସୀ ଭାରତୀୟ- ଓଡିଆମାନଙ୍କୁ ଉତ୍କଳ ସମ୍ମିଳନୀର ଆଜୀବନ ସଭ୍ୟ ହେବା ପାଇଁ ସମ୍ମିଳନୀ ତରଫରୁ ଲିଖିତ ଅନୁରୋଧ, ସେଠାରେ ଥିବା ଓଡିଆମାନଙ୍କୁ ଜଣାଇଛନ୍ତି ଏବଂ ଆଜୀବନ ସଭ୍ୟ ହେବା ପାଇଁ ପ୍ରବର୍ତ୍ତନା ଦେଇଛନ୍ତି ବୋଲି ବୈଠକରେ ପ୍ରକାଶ କଲେ । ଦମ୍ପତି-ସଭ୍ୟ ଚାନ୍ଦା (ଆଜୀବନ ଚାନ୍ଦା) ୧୨ ଶହ ଟଙ୍କା (୪୦ ଡଲାର୍) ଦେବାକୁ ଆମେରିକାବାସୀ ଓଡିଆ ଦମ୍ପତି ସମ୍ମତି ଦେଇଥିବା କହିଥିଲେ । ଏହା ଅନୁମୋଦିତ ହେଲା ।

୨. ମହାସଚିବ ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ ବୈଠକରେ ଉପସଭାପତି ନ୍ୟାୟମୂର୍ତ୍ତି ଶ୍ରୀ କୃଷ୍ଣପ୍ରସାଦ ମହାପାତ୍ର ରାଜ୍ୟ ଲୋକପାଳ ଭାବେ ନିଯୁକ୍ତି ପାଇଥିବା ଦୃଷ୍ଟିରୁ ଉପସଭାପତି ପଦରୁ ଇସ୍ତଫା ଦେଇଛନ୍ତି ବୋଲି ପ୍ରକାଶ କରିଥିଲେ । ଶ୍ରୀ ମହାପାତ୍ରଙ୍କର ଇସ୍ତଫା କାର୍ଯ୍ୟକାରୀ ସମିତି ଗ୍ରହଣ କରି ନେଇଥିଲେ ଏବଂ ଶ୍ରୀ ମହାପାତ୍ରଙ୍କୁ ଉପସଭାପତି ଭାବେ ତାଙ୍କର କାର୍ଯ୍ୟ ଦକ୍ଷତା ପାଇଁ ପ୍ରଶଂସା ପୂର୍ବକ ଧନ୍ୟବାଦ ଅର୍ପଣ କରାଯାଇଥିଲା । ଆଜୀବନ ସଭ୍ୟ ଭାବେ ସମ୍ମିଳନୀର କାର୍ଯ୍ୟଧାରାକୁ ଆଗେଇ ନେବା ପାଇଁ ତାଙ୍କୁ ଅନୁରୋଧ କରାଗଲା ।

୩. ଗତ ୨୪-୨-୯୭ ରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ପୁନଃମୁଦ୍ରିତ 'ଓଡିଆ ଭାଷା ବ୍ୟାକରଣ' ଉନ୍ମୋଚିତ ହେବା ବିଷୟରେ ଆଲୋଚନା ହେଲା । ପଣ୍ଡିତ ନୀଳକଣ୍ଠ ସ୍ମୃତି ସମିତିକୁ ଏଥିପାଇଁ ମହାସଚିବ ପାଞ୍ଚ ହଜାର ଟଙ୍କା ଦେଇଥିବା ପ୍ରକାଶ କଲେ । ଓଡିଆ ବ୍ୟାକରଣ ବାବଦକୁ ରାଜସ୍ୱ ବିଭାଗରୁ ଦଶ ହଜାର ଟଙ୍କା ମିଳିଛି । ଉତ୍କଳ ସମ୍ମିଳନୀ ତରଫରୁ ଏକ ଅଭିମତ ତଥା ମୁଖବନ୍ଧ ଏହି ବ୍ୟାକରଣ ପୁସ୍ତପରେ ସ୍ଥାନିତ ହୋଇ ପାରିବାର ପ୍ରାସଙ୍ଗିକତା ଓ ଆବଶ୍ୟକତା ଅଛି ବୋଲି ଉପସ୍ଥିତ ସଭ୍ୟମାନେ ଉପଲବ୍ଧ କରିଥିଲେ । ମୋଟ୍ ୧୨୦୦ ଖଣ୍ଡ ବହି ମଧ୍ୟରୁ ପଣ୍ଡିତ ନୀଳକଣ୍ଠ ସ୍ମୃତି ସମିତି ଦୁଇ ଶହ ଖଣ୍ଡ ରଖି ଏକ ହଜାର ଖଣ୍ଡ ପୁସ୍ତକ ସମ୍ମଳନୀକୁ ଦେଲେ, ଅବଶିଷ୍ଟ ଖର୍ଚ୍ଚ ହୋଇଥିବା ଟଙ୍କା ଦିଆଯିବା ବୋଲି ସ୍ଥିର ହେଲା । ୨୪-୨-୯୭ ରେ ବହି ବିକ୍ରି ଲବ୍ଧ ଟଙ୍କା ସ୍ମୃତି ସମିତିକୁ ଦିଆଯାଇ ଥିବାରୁ ତାହା ଅବଶିଷ୍ଟ ଟଙ୍କା ଦେଲା ବେଳେ ମଜୁରା ହେବ ବୋଲି ସ୍ଥିର ହେଲା ।

୪. ରାଉରକେଲା ଇସ୍ପାତ କାରଖାନାର ମୁଖ୍ୟ ନାମ ଫଳକକୁ ଓଡିଆ ଭାଷାରେ ସ୍ୱତନ୍ତ୍ର ଭାବେ ଲେଖା ଯାଇଥିବା କଥା ମହାସଚିବ ଶ୍ରୀ ପାଣିଗ୍ରାହୀ ଜଣାଇଥିଲେ । ଏହା ମୁଖ୍ୟ ନାମ ଫଳକରେ ଅଗ୍ର ଭାଗରେ ସ୍ଥାନିତ ହୋଇଥିଲେ, ଉଚିତ୍ ହୋଇଥାନ୍ତା; ତଥାପି ସମ୍ମିଳନୀ ତଥା ଜନମତର ଦାବୀକୁ କାରଖାନା ଗ୍ରହଣ କରି ଏତକ କରିଥିବାରୁ ଉପସ୍ଥିତ ସଭ୍ୟମାନେ ଆଶ୍ୱସ୍ତି ପ୍ରକାଶ କରିଥିଲେ ।

୫. କଟକ-ବ୍ରହ୍ମପୁର-ପଲାସା ମଧ୍ୟରେ ଚାଲୁଥିବା ଡି.ଏମ୍.ୟୁ. ରେଳଗାଡିର ନାମକରଣ ପରିବର୍ତ୍ତନ କରାଯାଇଥିବା ସମ୍ପର୍କରେ କେନ୍ଦ୍ର ମନ୍ତ୍ରୀ ଶ୍ରୀ ଶ୍ରୀକାନ୍ତ ଜେନାଙ୍କ ମାଧ୍ୟମରେ ରେଳବାଇ ମନ୍ତ୍ରଣାଳୟକୁ ପୁନଃବିଚାର ପାଇଁ ଅନୁରୋଧ କରାଯାଇଛି ବୋଲି ମହାସଚିବ ଜଣାଇଥିଲେ । ଏ ବିଷୟରେ ତଦ୍‌ବିର୍ କରିବା ପାଇଁ ସ୍ଥିର ହେଲା ।

୬. ସଂସ୍କୃତି ବିଭାଗରୁ ବାର୍ଷିକ ଦଶ ହଜାର ଟଙ୍କା ପୌନପୌନିକ ଅନୁଦାନ ଭାବେ ଗତ ଏବଂ ଚଳିତ ଆର୍ଥିକ ବର୍ଷ ପାଇଁ କୋଡିଏ ହଜାର ଟଙ୍କା ମିଳିବା ସପକ୍ଷରେ ସଂପୃକ୍ତ

ବିଭାଗ କାର୍ଯ୍ୟାନୁଷ୍ଠାନ କରୁଛନ୍ତି ବୋଲି ଜଣାଯାଇଥିଲା । 'ଓଡିଶା ବନାମ ଆଞ୍ଚଳିକତା' ପୁସ୍ତକ (ସମ୍ମିଳନୀର ନିଜସ୍ୱ ପ୍ରକାଶନ) ସଂସ୍କୃତି ନିର୍ଦ୍ଦେଶାଳୟ କିଣି ନେବାର ସମ୍ଭାବନା ଅଛି ବୋଲି ସଚିବ ଡ: ଶ୍ରୀଚନ୍ଦନ ଜଣାଇଥିଲେ । ଏ ଦୁଇଟି ବିଷୟରେ ତଦ୍‌ବିର୍ କରାଯିବା ପାଇଁ ସ୍ଥିର ହେଲା ।

୭. ଆଗାମୀ ଅପ୍ରେଲ୍ ପହିଲା ଦିନ ସୋରରେ ଏକ ସ୍ୱତନ୍ତ୍ର ଅଧିବେଶନ କରିବା ପାଇଁ ପ୍ରସ୍ତାବ ଆସିଛି । କାର୍ଯ୍ୟକାରୀ ସମିତି ଏହାକୁ ଅନୁମୋଦନ କରିଥିଲେ । ଏତଦ୍‌ବ୍ୟତୀତ ନିମ୍ନ ଦିବସମାନଙ୍କରେ ରାଜ୍ୟର ବିଭିନ୍ନ ସ୍ଥାନରେ ଅଧିବେଶନ - ସଭା ସମିତି ହେବାର ସ୍ଥିର ହେଲା ।

(କ) ୧୯୫୪ ଅପ୍ରେଲ ୨୩ ରେ 'ଓଡିଶା ସରକାରୀ ଭାଷା ଆଇନ୍' ବିଧାନ ସଭାରେ ଗୃହୀତ ହୋଇ ଆଇନ୍‌ରେ ପରିଣତ ହୋଇଥିବାରୁ ଏହାର ସ୍ମାରକୀ ସ୍ୱରୂପ ଚଳିତ ବର୍ଷ ଅପ୍ରେଲ୍ ୨୩ ତାରିଖରେ ବରଗଡ ଠାରେ ଏକ ଅଧିବେଶନ (ସମତା ଭବନ) ହେବାର ସ୍ଥିର ହେଲା ।

(ଖ) ଅପ୍ରେଲ ୨୬ ରେ ପାରଳା ଗଜପତି କୃଷ୍ଣଚନ୍ଦ୍ରଙ୍କର ଜୟନ୍ତୀ ପଡୁଥିବାରୁ ସେଦିନ ପୁରୀରେ ପାଳନ କରିବା ପାଇଁ ଏକ ଅଧିବେଶନ ଅନୁଷ୍ଠାନ କରାଯିବା ସ୍ଥିର ହେଲା ।

(ଗ) ଅପ୍ରେଲ ୨୮ ରେ ଜାତୀୟ ଗୌରବ ମଧୁସୂଦନ ଦାସଙ୍କର ଜୟନ୍ତୀ ଅନୁଗୁଳଠାରେ ସ୍ୱତନ୍ତ୍ର ଭାବେ ପାଳିତ ହେବା ସ୍ଥିର ହେଲା ।

(ଘ) ଆଗାମୀ ମାର୍ଚ୍ଚ ପନ୍ଦରରୁ ତିରିଶ ମଧ୍ୟରେ ଝାରସୁଗୁଡା ଓ ନୂଆପଡା (ଖଡିଆଳ) ରେ ବୈଠକ କରିବା ସ୍ଥିର ହେଲା ।

(ଙ) ମାର୍ଚ୍ଚ ପନ୍ଦର ପୂର୍ବରୁ ପଠାଣି ସାମନ୍ତ ପ୍ଲାନେଟୋରିୟମ୍ ଡାଇରେକ୍ଟରଙ୍କୁ ପତ୍ର ଲେଖି 'ସିଦ୍ଧାନ୍ତ ଦର୍ପଣ'ର ଇଂରାଜି ଅନୁବାଦ କରାଯିବା ସମ୍ପର୍କରେ ଆଲୋଚନା କାର୍ଯ୍ୟକ୍ରମ କରିବା ପାଇଁ ନିଷ୍ପତ୍ତି ନିଆଗଲା ।

(ଚ) ଚଳିତ ବର୍ଷଠାରୁ କଳିଙ୍ଗ ସମ୍ରାଟ ଐର ଖାରବେଳଙ୍କର ଜନ୍ମ ବାର୍ଷିକୀ ରାଜ୍ୟ ସରକାର (ସଂସ୍କୃତି ବିଭାଗ) ପାଳନ କରୁଥିବା ବିଷୟ ଜଣାଯିବା ପରିପ୍ରେକ୍ଷୀରେ ଆଗାମୀ ମେ ୨୦ ରେ ଭୁବନେଶ୍ୱରଠାରେ "ଖାରବେଳ ଦିବସ" ପାଳନ ସମ୍ମିଳନୀ ତରଫରୁ କରାଯିବା ପାଇଁ ସ୍ଥିର ହେଲା ।

(ଛ) ଜୁନ୍- ଜୁଲାଇ ବେଳକୁ ଦିଲ୍ଲୀରେ ଓଡିଶାର ସାଂସଦମାନଙ୍କୁ ଭେଟି ୧୯୯୭ - ଓଡିଆ ଭାଷା ବର୍ଷ ପାଳନ ତଥା ବିଚ୍ଛିନ୍ନାଞ୍ଚଳରେ ଓଡିଆ ଭାଷା ସୁରକ୍ଷା ସମ୍ପର୍କରେ ଆଲୋଚନା କରିବା ପାଇଁ ସ୍ଥିର ହେଲା ।

(ଜ) ଓଡିଆ ଭାଷା ବର୍ଷ ପାଳନ ସମ୍ପର୍କରେ ମୁଖ୍ୟ ଶାସନ ସଚିବଙ୍କ ସହିତ ସମ୍ଭବ

ହେଲେ ଆଗାମୀ ମାର୍ଚ୍ଚ ଏକ ତାରିଖ ତିନିଟା ବେଳେ କିମ୍ବା ଅନ୍ୟ ଦିବସରେ ସାକ୍ଷାତ ଆଲୋଚନା ପାଇଁ ସ୍ଥିର ହେଲା । ସଭ୍ୟ ଶ୍ରୀ ଶ୍ରୀଚରଣ ସ୍ୱାଇଁ ମୁଖ୍ୟ ଶାସନ ସଚିବ ଦପ୍ତର ସହିତ ଯୋଗାଯୋଗ କରି ସାକ୍ଷାତ ଆଲୋଚନା ନିର୍ଘଣ୍ଟ ସ୍ଥିର କରିବେ । ପ୍ରତିନିଧି ମଣ୍ଡଳରେ ଶ୍ରୀ ବଙ୍କିପାତ୍ର, ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ, ଶ୍ରୀ ବଳରାମ ମହାନ୍ତି, ଶ୍ରୀ ପଦ୍ମଚରଣ ନାୟକ, ଶ୍ରୀ ସୁରେନ୍ଦ୍ର ମୋହନ ପଣ୍ଡା, ଶ୍ରୀ ଶ୍ରୀଚରଣ ସ୍ୱାଇଁ ଓ ଡକ୍ଟର ଶ୍ରୀଚନ୍ଦନ ଯିବା ସ୍ଥିର ହେଲା ।

(ଙ) ମୁଖ୍ୟମନ୍ତ୍ରୀଙ୍କ ସହ ସାକ୍ଷାତ ଆଲୋଚନା ପାଇଁ ପତ୍ର ଲେଖାଯାଇଛି । ସେ କାର୍ଯ୍ୟକ୍ରମ ସ୍ଥିର କରିବା ପାଇଁ ଶ୍ରୀ ଶ୍ରୀଚରଣ ସ୍ୱାଇଁଙ୍କୁ ଅନୁରୋଧ କରାଗଲା ।

୮. ଓଡିଆ ଭାଷା ବର୍ଷ ପାଳନ ସମ୍ପର୍କୀୟ ଅନ୍ୟାନ୍ୟ କାର୍ଯ୍ୟକ୍ରମ ଉପରେ ଆଲୋଚନାହେଲା ।

(କ) ସମ୍ବଲପୁର ବିଶ୍ୱବିଦ୍ୟାଳୟ ଏବଂ ଉତ୍କଳ ସମ୍ମିଳନୀର ମିଳିତ ଆନୁକୂଲ୍ୟରେ ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରେ ଆଲୋଚନା ଚକ୍ର ଶୋଭାଯାତ୍ରା ସମ୍ପର୍କରେ କୁଳପତିଙ୍କୁ ପତ୍ର ଲେଖାଯାଇଥିଲା । ତାଙ୍କଠାରୁ ଅନୁକୂଳ ଉତ୍ତର ମିଳିଛି । ପୁଣି ତାଙ୍କ ସହ ପତ୍ରାଳାପ କରି ଏହି କାର୍ଯ୍ୟକ୍ରମ ତ୍ୱରାନ୍ୱିତ କରିବାକୁ ନିଷ୍ପତ୍ତି ନିଆଗଲା ।

(ଖ) ଉତ୍କଳ ବାଣିଜ୍ୟ-ଶିଳ୍ପ ସଙ୍ଘ ଅନରାରି ସେକ୍ରେଟାରୀଙ୍କ ସହ ସଚିବ ଡକ୍ଟର ଶ୍ରୀଚନ୍ଦନ ଏବଂ ସଭ୍ୟ ସର୍ବଶ୍ରୀ ଶ୍ରୀଚରଣ ସ୍ୱାଇଁ, (ଡାକ୍ତର) ଗୁରୁପ୍ରସାଦ ମହାନ୍ତି ସାକ୍ଷାତ କରି ଦୋକାନ ଏବଂ ଶିଳ୍ପ-ବାଣିଜ୍ୟିକ ସଂସ୍ଥାର ନାମ ଓ ବିଜ୍ଞାପନ ଫଳକ ଓଡିଆରେ ଲେଖାଯିବା ବିଷୟ ଆଲୋଚନା କରିଥିଲେ । ଏହି ପ୍ରସ୍ତାବ କାର୍ଯ୍ୟକାରୀ କରିବା ପାଇଁ ରାଜ୍ୟ ଶିଳ୍ପ-ବଣିକ ସଙ୍ଘ ସମ୍ପାଦକ ନିର୍ଭର ପ୍ରତିଶ୍ରୁତି ଦେଇଛନ୍ତି । ତାଙ୍କର ସମସ୍ତ ଶାଖା ଗୁଡିକୁ ଏହି ମର୍ମରେ ସର୍କୁଲାର୍ ପଠାଇବା ପାଇଁ ଦୁଇ ତିନି ଦିନ ମଧ୍ୟରେ ପଦକ୍ଷେପ ନେବାକୁ ଶ୍ରୀ ବିନୋଦ ଦାଶ, ସଙ୍ଘର ଅନରାରୀ ସେକ୍ରେଟାରୀ ସୂଚନା ଦେଇଛନ୍ତି । ଏହାକୁ ମଝିରେ ମଝିରେ ତଦ୍‌ବିର୍ କରିବା ପାଇଁ ସ୍ଥିର ହେଲା । ଏ ସମ୍ପର୍କରେ ପ୍ରଚାର ପତ୍ର ଛପାଇ ବିଭିନ୍ନ ଜିଲ୍ଲାକୁ ବଣ୍ଟନ ପାଇଁ ପଠାଇବାକୁ ସ୍ଥିର ହେଲା ।

(ଗ) ଓଡିଶା ବିପଣି ଓ ବାଣିଜ୍ୟିକ ସଂସ୍ଥାନ ଅଧିନିୟମର ସଂପୃକ୍ତ ୩୪ ଧାରାରେ ସଂଶୋଧନ କରି ଓଡିଆରେ ନାମ ଫଳକ ଓ ବିଜ୍ଞାପନ ଫଳକ ଲେଖିବାକୁ ଆଇନତଃ ବାଧ୍ୟତାମୂଳକ କରିବା ପାଇଁ ବିଧାନ ସଭାରେ ଏକ ସଂଶୋଧନ ବିଲ୍ ଆଣିବା ସମ୍ପର୍କରେ ବିଧାୟକମାନଙ୍କ ସହ ଆଲୋଚନା କରିବାକୁ ସ୍ଥିର ହେଲା ।

(ଘ) ଭୁବନେଶ୍ୱର କାର୍ଯ୍ୟାଳୟ ପାଇଁ ସରକାରୀ ଗୃହ ଯୋଗାଣ ସମ୍ପର୍କରେ ପୁଣି ଥରେ ଆବେଦନ କରାଯାଇଛି । ଏ ବିଷୟ ତଦ୍‌ବିର୍ କରିବା ପାଇଁ ସଭ୍ୟ ଶ୍ରୀ ଶ୍ରୀଚରଣ ସ୍ୱାଇଁଙ୍କୁ ଦାୟିତ୍ୱ ଦିଆଗଲା ।

୯. ଓଡିଆ ଭାଷା ବର୍ଷ ପାଳନର ସଫଳ ରୂପାୟନ ପାଇଁ ନିମ୍ନଲିଖିତ ସାକ୍ଷାତ- ଆଲୋଚନା ପାଇଁ ସ୍ଥିର ହେଲା ।

(କ) 'ଓଡିଆ ଭାଷା ବର୍ଷ' ପାଳନ ସମ୍ପର୍କୀୟ କାର୍ଯ୍ୟକ୍ରମ ବିବରଣୀ ପ୍ରତ୍ୟେକ ସମ୍ବାଦ ପତ୍ରରେ ପ୍ରକାଶ କରିବା ପାଇଁ ଅନୁରୋଧ କରାଯାଇଅଛି । ଆଉଥରେ ସମ୍ମିଳନୀ ସଭାପତି ଡକ୍ଟର ରାଧାନାଥ ରଥଙ୍କ ସ୍ୱାକ୍ଷରରେ ସମ୍ବାଦପତ୍ର ସମ୍ପାଦକ ଓ ପ୍ରତିନିଧିମାନଙ୍କର ଏକ ବୈଠକ କଟକ- ଗୋପବନ୍ଧୁ ଭବନରେ ଆହୂତ ହେବାପାଇଁ ସ୍ଥିର ହେଲା । ଏହି ବୈଠକ ମାର୍ଚ୍ଚ ମାସ ମଧ୍ୟରେ ବସିବ ।

(ଖ) ଭୁବନେଶ୍ୱରସ୍ଥ ସମ୍ମିଳନୀ କାର୍ଯ୍ୟାଳୟଠାରେ ଆଗାମୀ ମାର୍ଚ୍ଚ ୮ ତାରିଖ ଶନିବାର ଅପରାହ୍ନ ୪ଟା ବେଳେ ଇଲେକ୍‌ଟ୍ରୋନିକ୍ ମେଡିଆ କର୍ମକର୍ତ୍ତା ଯଥା :- (୧) ଅଲ୍ ଇଣ୍ଡିଆ ରେଡିଓ ଷ୍ଟେସନ୍ ଡାଇରେକ୍ଟର, (୨) ଆକାଶବାଣୀ ମୁଖ୍ୟବାର୍ତ୍ତା ସମ୍ପାଦକ, (୩) ଦୂରଦର୍ଶନ ନିର୍ଦ୍ଦେଶକ, ଭୁବନେଶ୍ୱର ଏବଂ (୪) ଦୂରଦର୍ଶନ ମୁଖ୍ୟବାର୍ତ୍ତା ସମ୍ପାଦକ (ଶ୍ରୀ ରିଚ୍‌ଭି) ଙ୍କ ସହ ଏକ ସାକ୍ଷାତ ଆଲୋଚନା ଅନୁଷ୍ଠିତ ହେବା ପାଇଁ ସ୍ଥିର ହେଲା ।

(ଗ) ପ୍ରାଥମିକ ଓ ମାଧ୍ୟମିକ ସ୍ତରରେ ଓଡିଆ ଭାଷା ଶିକ୍ଷା ଏବଂ ଓଡିଆ ଭାଷା ମାଧ୍ୟମରେ ଶିକ୍ଷାର ଉନ୍ନତିକରଣ ସମ୍ପର୍କରେ ଶିକ୍ଷା ବିଭାଗ କର୍ମକର୍ତ୍ତାମାନଙ୍କ ସହ ଆଲୋଚନା ହେବା ପାଇଁ ନିଷ୍ପତ୍ତି ନିଆଗଲା । ନୂତନ ଶିକ୍ଷା ପାଇଁ ପୂର୍ବରୁ ଏହି ଆଲୋଚନା ଅନୁଷ୍ଠିତ ହେବ ।

(ଘ) ବିଜ୍ଞାନ ପୁସ୍ତକ ସମ୍ପର୍କରେ ସୃଜନିକା, ବିଜ୍ଞାନ ପ୍ରଚାର ସମିତି, ବିଜ୍ଞାନ ଏକାଡେମୀ ଏବଂ 'ପି.ଡି.ସି.'ର କର୍ମକର୍ତ୍ତାମାନଙ୍କ ସହ ସାକ୍ଷାତ ଆଲୋଚନା ପାଇଁ ସ୍ଥିର ହେଲା ।

(ଙ) ଅଣଓଡିଆ ଅଧିବାସୀମାନଙ୍କୁ ଓଡିଆ ଶିକ୍ଷା ଦେବାପାଇଁ ଏକ ଶିକ୍ଷାନୁଷ୍ଠାନର ଆବଶ୍ୟକତା ଅନୁଭୂତ ହୁଏ । ଏ ଦିଗରେ ପଦକ୍ଷେପ ନେବା ନିମନ୍ତେ ନିଷ୍ପତ୍ତି ନିଆଗଲା ।

୧୦. 'ଓଡିଆ ଭାଷା ବର୍ଷ' ପାଳନର ପ୍ରଥମ ଦୁଇ ମାସ ଅତିକ୍ରାନ୍ତ ହେଉଥିବା ପରିପ୍ରେକ୍ଷୀରେ ରାଜ୍ୟରେ ସରକାରୀ ଭାଷା ରୂପେ ଓଡ଼ିଆ ଭାଷାର ପୂର୍ଣ୍ଣାଙ୍ଗ ବହୁଳ ପ୍ରଚଳନ ରାଜ୍ୟ ସରକାରୀ ଦପ୍ତର ତଥା ଇଂରାଜୀ ମାଧ୍ୟମ ବିଦ୍ୟାଳୟ ଗୁଡିକରେ ଆଦୌ ସନ୍ତୋଷଜନକ ଭାବେ ହେଉ ନ ଥିବାରୁ ଆଗାମୀ ଅପ୍ରେଲ୍ ପହିଲା - ଉତ୍କଳ ଦିବସ ପରେ ପରିସ୍ଥିତି ସମୀକ୍ଷା କରି ସାରା ରାଜ୍ୟରେ ଆନ୍ଦୋଳନାତ୍ମକ ପଦକ୍ଷେପ ମାଧ୍ୟମରେ ଓଡିଆ ଭାଷା ବ୍ୟବହାର ସପକ୍ଷରେ ଜାଗରଣ ସୃଷ୍ଟି କରିବା ପାଇଁ ସ୍ଥିର ହେଲା । ଏ ସମ୍ପର୍କରେ ଏକ ବିଜ୍ଞପ୍ତି ସମ୍ବାଦ ପତ୍ରମାନଙ୍କୁ ଦେବା ପାଇଁ ନିଷ୍ପତ୍ତି ନିଆଗଲା ।

ଶେଷରେ ସଭାପତିଙ୍କୁ ଧନ୍ୟବାଦ ଅର୍ପଣ କରାଯାଇ ସଭା ସାଙ୍ଗ ହେଲା ।

ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ସଚିବ　　　　ହରିଶ୍ଚନ୍ଦ୍ର ବକ୍ସିପାତ୍ର, ସଭାପତି

## ତା-୪-୫-୯୭ ରିଖରେ ଭୁବନେଶ୍ୱରସ୍ଥ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟଠାରେ ଅନୁଷ୍ଠିତ କାର୍ଯ୍ୟକାରୀ ସମିତି ବୈଠକ ବିବରଣୀ

### ସମୟ - ପୂର୍ବାହ୍ନ ୧୦ ଟା

ଉପସ୍ଥିତ ସଭ୍ୟ :

(୧) ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଉପସଭାପତି (୨) ବସନ୍ତ କୁମାର ପାଣିଗ୍ରାହୀ, ମହାସଚିବ (୩) ଅରବିନ୍ଦ ପଟ୍ଟନାୟକ, ଆଜୀବନ ସଭ୍ୟ (୪) ବିଚିତ୍ରାନନ୍ଦ ସାହୁ, କାର୍ଯ୍ୟକାରୀ ସମିତି ସଭ୍ୟ (୫) ବସନ୍ତ କୁମାର ତ୍ରିପାଠୀ, କାର୍ଯ୍ୟକାରୀ ସମିତି ସଭ୍ୟ (୬) ଶ୍ରୀବରଣ ସ୍ୱାଇଁ, ଆଜୀବନ ସଭ୍ୟ, ସ୍ୱତନ୍ତ୍ର ନିମନ୍ତ୍ରିତ (୭) ଆଚାର୍ଯ୍ୟ ଭାବାନନ୍ଦ, କୋଷାଧ୍ୟକ୍ଷ (୮) ସୁରେନ୍ଦ୍ର ମୋହନ ପଣ୍ଡଳ, ଆଜୀବନ ସଭ୍ୟ, ସ୍ୱତନ୍ତ୍ର ନିମନ୍ତ୍ରିତ (୯) ନିତ୍ୟାନନ୍ଦ ମହାପାତ୍ର, ଆଜୀବନ ସଭ୍ୟ, ସ୍ୱତନ୍ତ୍ର ନିମନ୍ତ୍ରିତ (୧୦) ବଳରାମ ମହାନ୍ତି, ଆଜୀବନ ସଭ୍ୟ, ସ୍ୱତନ୍ତ୍ର ନିମନ୍ତ୍ରିତ (୧୧) ଚନ୍ଦ୍ରମଣି ଆଚାର୍ଯ୍ୟ, ଆଜୀବନ ସଭ୍ୟ, ସ୍ୱତନ୍ତ୍ର ନିମନ୍ତ୍ରିତ (୧୨) କାନନବାଳା ମହାନ୍ତି, ଆଜୀବନ ସଭ୍ୟ, ସ୍ୱତନ୍ତ୍ର ନିମନ୍ତ୍ରିତ (୧୩) ଡଂ. ଅମରେନ୍ଦ୍ର କୁମାର ଦାସ, କା:ସ:ସଭ୍ୟ (୧୪) ବିପିନ ବିହାରୀ ରଥ, କା:ସ:ସଭ୍ୟ (୧୫) ଅନ୍ନପୂର୍ଣ୍ଣା ମିଶ୍ର, ଆ:ସଭ୍ୟ (୧୬) ଗୋପୀନାଥ ସାହୁ, କା:ସ:ସଭ୍ୟ (୧୭) ପଦ୍ମଚରଣ ନାୟକ, ଆ:ସଭ୍ୟ (୧୮) କିଶୋର ଚନ୍ଦ୍ର ପଣ୍ଡା, ଆ:ସଭ୍ୟ (୧୯) ଡକ୍ଟର ଗୁରୁପ୍ରସାଦ ମହାନ୍ତି, ଆ:ସଭ୍ୟ (୨୦) ସତ୍ୟ ଭୂଷଣ ଦାଶ, ଆ:ସଭ୍ୟ ।

ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଉପସଭାପତିଙ୍କ ସଭାପତିତ୍ୱରେ ବୈଠକ ଅନୁଷ୍ଠିତ ହୋଇଥିଲା । ବୈଠକ ଆରମ୍ଭରେ ଦୁଇ ମିନିଟ୍ ନୀରବ ପ୍ରାର୍ଥନା ସହ ଓଡିଶାର ବରପୁତ୍ର ବିଜୁ ପଟ୍ଟନାୟକ, ଘାସିରାମ ମାଝୀ, ସୁନୀଲ ପଟ୍ଟନାୟକ ଓ ଯୋଗେନ୍ଦ୍ର ଆଚାର୍ଯ୍ୟଙ୍କ ବିୟୋଗରେ ଶୋକ ପ୍ରସ୍ତାବ ଗୃହୀତ ହୋଇଥିଲା ।

ଗତ ୨୫-୨-୯୭ ରେ ଅନୁଷ୍ଠିତ କାର୍ଯ୍ୟକାରୀ ସମିତି ବୈଠକ ବିବରଣୀ ପାଠ କରାଯାଇ ଠିକ୍ ଥିବାରୁ ଦୃଢ଼ୀକୃତ ପୂର୍ବକ ଗୃହୀତ ପ୍ରସ୍ତାବଗୁଡିକ ଉପରେ ନିଆଯାଇଥିବା କାର୍ଯ୍ୟାନୁଷ୍ଠାନର ସମୀକ୍ଷା କରାଗଲା । ଅନେକ କାର୍ଯ୍ୟ କରାଯିବାକୁ ବାକି ଅଛି ବୋଲି ସମୀକ୍ଷାରୁ ଜଣାଗଲା । ପ୍ରସ୍ତାବଗୁଡିକର କାର୍ଯ୍ୟକାରିତା ଅତି ମନ୍ଥର ହେଉଛି ବୋଲି ଉପସ୍ଥିତ ସଭ୍ୟମାନେ ମତ ଦେଇଥିଲେ ।

୧. ଭୁବନେଶ୍ୱରଠାରେ କେନ୍ଦ୍ର କାର୍ଯ୍ୟାଳୟ ପାଇଁ ସରକାରୀ ଗୃହ ଯୋଗାଣ ନିମନ୍ତେ ସରକାରଙ୍କୁ ଆବେଦନ କରାଯାଇଛି । ଦୀର୍ଘଦିନ ଅତିକ୍ରାନ୍ତ ହୋଇଥିଲେ ମଧ୍ୟ ସରକାରଙ୍କ ତରଫରୁ ଗୃହ ଯୋଗାଇ ଦିଆଯାଇ ନ ଥିବାରୁ ସଭ୍ୟମାନେ କ୍ଷୋଭ

ପ୍ରକାଶ କରିଥିଲେ । ଏ ଦିଗରେ ସରକାରଙ୍କ ସହ ଯୋଗାଯୋଗ କରିବା ପାଇଁ ସଭ୍ୟ ଶ୍ରୀ ଶ୍ରୀଚରଣ ସ୍ୱାଇଁଙ୍କୁ ପୁଣି ଦାୟିତ୍ୱ ଦିଆଗଲା ।

୨. ସଭ୍ୟ ଚାନ୍ଦା ଆଦାୟ ରସିଦ ବହି ସଂପୃକ୍ତ ଆଦାୟକାରୀଙ୍କଠାରୁ ବ୍ୟକ୍ତିଗତ ସଂପର୍କ ଓ ଚିଠିପତ୍ର ମାଧ୍ୟମରେ ଫେରସ୍ତ ଆଣିବା ପାଇଁ ସ୍ଥିର ହେଲା । ବୈଠକ ପୂର୍ବରୁ ମୁଣ୍ଡା ଚେକ୍ ସଂଗ୍ରହ ହେବ ବୋଲି ନିଷ୍ପତ୍ତି ନିଆଗଲା ।

୩. ବହୁ ଆଲୋଚନା ପରେ ସ୍ଥିର ହେଲା, ଜୁନ୍ ୩୦, ୧୯୯୭ ସୁଦ୍ଧା ଉତ୍କଳ ସମ୍ମିଳନୀର ସମସ୍ତ ହିସାବ ସଂମ୍ପୂର୍ଣ୍ଣ କରାଯିବ ।

ଭୁବନେଶ୍ୱର ଏବଂ ବ୍ରହ୍ମପୁରଠାରେ ଥିବା ଅଲଗା ଅଲଗା ହିସାବକୁ ସମନ୍ୱୟ କରି ଆସନ୍ତା କାର୍ଯ୍ୟକାରୀ ସମିତି ବୈଠକ ଦିନ ଚୂଡ଼ାନ୍ତ ହିସାବ ଉପସ୍ଥାପିତ କରିବା ପାଇଁ ମହସଚିବ ଓ କୋଷାଧ୍ୟକ୍ଷ ପ୍ରତିଶ୍ରୁତି ଦେଲେ ।

୧୯୯୬ ନଭେମ୍ବର ମାସରେ ଅନୁଷ୍ଠିତ ବିଶେଷ ଅଧିବେଶନ ଏବଂ ପରବର୍ତ୍ତୀ ସମୟରେ କରାଯାଇଥିବା ଚାନ୍ଦା ଆଦାୟ ଓ ଖର୍ଚ୍ଚର ଏକ ହିସାବ ଫର୍ଦ୍ଦ ଉପସଭାପତି ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ଉପସ୍ଥାପନ କଲେ । ଆସନ୍ତା କାର୍ଯ୍ୟକାରୀ ସମିତି ବୈଠକ ବେଳକୁ କମିଟି ସଭ୍ୟମାନେ ହିସାବ ଫର୍ଦ୍ଦ ଯାଞ୍ଚ କରି ଅନୁମୋଦନ କରିବେ ଏବଂ ତାହା ମୂଳ ହିସାବ୍ ସହିତ ସାମିଲ କରାଯିବା ପାଇଁ ସ୍ଥିର ହେଲା ।

ଗତ ୧୯୯୬ ମାର୍ଚ୍ଚ - ଅପ୍ରେଲ୍‌ରେ ଅନୁଷ୍ଠିତ କଟକ ଅଧିବେଶନ ହିସାବ ଫର୍ଦ୍ଦ ଶ୍ରୀ ବିପିନ ବିହାରୀ ରଥ, କାର୍ଯ୍ୟକାରୀ ସମିତି ସଭ୍ୟ ପେଶ୍ କଲେ । କୋଷାଧ୍ୟକ୍ଷ ମଧ୍ୟ ଭୁବନେଶ୍ୱର କେନ୍ଦ୍ର କାର୍ଯ୍ୟାଳୟ ଆନୁକୂଲ୍ୟରେ ଅନୁଷ୍ଠିତ ବିଭିନ୍ନ ବୈଠକ ଓ ସଭା ସମିତି ବାବଦରେ ହୋଇଥିବା ଆୟ ବ୍ୟୟ ଫର୍ଦ୍ଦ ଉପସ୍ଥାପନ କରିଥିଲେ । ପୁରୀ, ସୋର, ଅନୁଗୋଳ ପ୍ରଭୃତି ସ୍ଥାନରେ ଅନୁଷ୍ଠିତ ହୋଇଥିବା ସ୍ୱତନ୍ତ୍ର ଅଧିବେଶନ ଓ ବୈଠକ ଗୁଡ଼ିକର ଆୟ ବ୍ୟୟ ଫର୍ଦ୍ଦ ସଂଗ୍ରହ କରାଯାଇ କେନ୍ଦ୍ର କାର୍ଯ୍ୟାଳୟ ହିସାବ ସହ ସାମିଲ ହେବାକୁ ସ୍ଥିର ହେଲା ।

ମହସଚିବ ଶ୍ରୀ ପାଣିଗ୍ରାହୀ କହିଲେ - ଏହି ଅଧିବେଶନ ଓ ବୈଠକ ଗୁଡ଼ିକ ସ୍ଥାନୀୟ ଅଭ୍ୟର୍ଥନା କମିଟି ଦ୍ୱାରା ପରିଚାଳିତ ହେଉଥିବାରୁ କେବଳ ଆୟ ବ୍ୟୟ ଫର୍ଦ୍ଦ କେନ୍ଦ୍ର କମିଟିଙ୍କ ଅବଗତି ନିମନ୍ତେ ଜଣାଇବେ ।

୪. ଆଜୀବନ ସଭ୍ୟ ଚାନ୍ଦାରୁ ସଂଗୃହୀତ ଅର୍ଥରୁ ବର୍ତ୍ତମାନ ପାଇଁ ଟ.୩୦,୦୦୦.୦୦ (ତିରିଶ ହଜାର ଟଙ୍କା) ପର୍ଯ୍ୟନ୍ତ ସ୍ଥାୟୀ ଜମା କରିବା ପାଇଁ କୋଷାଧ୍ୟକ୍ଷ ଓ ସଚିବଙ୍କୁ ଅନୁରୋଧ କରାଗଲା । ଏହି ଜମା ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କ ଲିଃରେ ପାଞ୍ଚ ବର୍ଷିୟା ସ୍ଥାୟୀ ଜମା କରାଯିବ ଓ ଏହାର ତ୍ରୈମାସିକ ସୁଧ ଉତ୍କଳ ସମ୍ମିଳନୀର ସଞ୍ଚୟ

ବ୍ୟାଙ୍କ ଆକାଉଣ୍ଟ - ୯୩୦୩ ରେ ଜମା ପାଇଁ ନିର୍ଦ୍ଦେଶ ପଞ୍ଜିକୃତ ହେବ ବୋଲି ସ୍ଥିର ହେଲା ।

୫. ଓଡ଼ିଆ ଭାଷାକୁ ସରକାରୀ ସ୍ତରରେ ପ୍ରଚଳନ କରିବା ପାଇଁ ମୁଖ୍ୟମନ୍ତ୍ରୀ କେତେକ ପଦକ୍ଷେପ ନେଇଥିବାରୁ କାର୍ଯ୍ୟକାରୀ ସମିତି ତାଙ୍କୁ ଧନ୍ୟବାଦ ଜ୍ଞାପନ କରୁଛନ୍ତି ।

ମାତ୍ର ତାଙ୍କ ନିର୍ଦ୍ଦେଶକୁ ତାଙ୍କ ସହକର୍ମୀ ଏବଂ ବିଭାଗୀୟ ସଚିବ ତଥା ଉଚ୍ଚ ପଦାଧିକାରୀମାନେ କାର୍ଯ୍ୟକାରୀ କରିବାରେ ଆଗ୍ରହ ପ୍ରକାଶ କରୁନାହାନ୍ତି । ଏହି ଦୃଷ୍ଟିରୁ ସମ୍ମିଳନୀ ସେମାନଙ୍କର ଉଦାସୀନ ମନୋଭାବକୁ ନିନ୍ଦା କରୁଛନ୍ତି । ଉତ୍କଳ ସମ୍ମିଳନୀ ପୁନର୍ବାର ଦାବୀ କରନ୍ତି ଯେ ଓଡିଆ ଭାଷାର ସାର୍ବଜନୀନ ପ୍ରଚଳନକୁ ସୁନିଶ୍ଚିତ କରିବା ପାଇଁ ଓଡିଶାର ସମସ୍ତ ଯୁବଛାତ୍ର ଅନୁଷ୍ଠାନ, ସାହିତ୍ୟିକ ତଥା ସାଂସ୍କୃତିକ ଅନୁଷ୍ଠାନମାନେ ସକ୍ରିୟ ହସ୍ତକ୍ଷେପ କରି ଜନମତ ସୃଷ୍ଟି ପୂର୍ବକ ଦୃଢ଼ଚାପ ପକାନ୍ତୁ ।

ଉତ୍କଳ ସମ୍ମିଳନୀ ୧୯୯୭ - ଓଡିଆ ଭାଷା ବର୍ଷ ପାଳନ କରୁଥିବା ପରିପ୍ରେକ୍ଷୀରେ ସରକାରଙ୍କ ନିକଟରେ ନିର୍ଦ୍ଦିଷ୍ଟ ଦାବୀ କରୁଛନ୍ତି ଯେ ସରକାରୀ ସ୍ତରରେ ଓଡିଆ ଭାଷା ପ୍ରଚଳନକୁ ସୁନିଶ୍ଚିତ ନ କଲେ ୧୯୯୭ ଅଗଷ୍ଟ ପନ୍ଦର ତାରିଖ ପରେ ରାଜ୍ୟ ଓ ଜିଲ୍ଲା ସ୍ତରରେ ସରକାରୀ କାର୍ଯ୍ୟାଳୟମାନଙ୍କରେ ଧାରଣା, ଘେରାଉ ଇତ୍ୟାଦି ପ୍ରତ୍ୟକ୍ଷ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବେ ।

୬. 'ଉତ୍କଳ ସମ୍ମିଳନୀ ସମାଚାର' ପ୍ରକାଶନ — ଆସନ୍ତା ଜୁନ୍ ମାସରୁ ଉତ୍କଳ ସମ୍ମିଳନୀ ତରଫରୁ ଏକ ମୁଖପତ୍ର ପ୍ରକାଶ କରାଯିବା ପାଇଁ ସିଦ୍ଧାନ୍ତ ଗ୍ରହଣ କରାଗଲା । ଏହି ମୁଖପତ୍ର ଭୁବନେଶ୍ୱରରୁ ପ୍ରତି ମାସରେ ମାସିକ ଭାବରେ ପ୍ରକାଶିତ ହେବ ଏବଂ ସେଥିଲାଗି ଏକ ସମ୍ପାଦନା ମଣ୍ଡଳୀ ମନୋନୀତ କରାଯିବ । ଏହି ମୁଖପତ୍ର ପ୍ରକାଶିତ ହେଲେ ଅନ୍ତତଃ ଛଅ ମାସ ପାଇଁ ତାର ଖର୍ଚ୍ଚ ଓ ପରିଚାଳନା ଦାୟିତ୍ୱ ନେବା ପାଇଁ ଶ୍ରୀ ଶ୍ରୀଚରଣ ସ୍ୱାଇଁ ଅନୁରୋଧ କରାଗଲା ।

ଏହି ମୁଖପତ୍ରର ସମ୍ପାଦନା ମଣ୍ଡଳୀରେ ସର୍ବଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ, ମୁଖ୍ୟ ସଂପାଦକ, ଶ୍ରୀ ଶ୍ରୀଚରଣ ସ୍ୱାଇଁ, ପରିଚାଳନା ସମ୍ପାଦକ ଏବଂ ସର୍ବଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର, ବଳରାମ ମହାନ୍ତି, ପଦ୍ମଚରଣ ନାୟକ, ଆଚାର୍ଯ୍ୟ ଭାବାନନ୍ଦ ଓ ଡ: ଗୋପାଳକୃଷ୍ଣ ଶ୍ରୀଚନ୍ଦନ ସଭ୍ୟ ରହିବେ ବୋଲି ସ୍ଥିର ହେଲା ।

୭. ୧୯୪୮ ମେ ୧୮ ତାରିଖ ଦିନ ଷଢ଼େଇକଳା - ଖରସୁଆଁ ଓଡିଶାରୁ ବିଚ୍ଛିନ୍ନ ହୋଇ ବିହାରରେ ଅସ୍ଥାୟୀ ଭାବେ ମିଶାଇ ଦିଆଯାଇଥିଲା ଏବଂ ରାଜ୍ୟ ପୁନର୍ଗଠନ କମିଶନଙ୍କ ରିପୋର୍ଟ ଭିତ୍ତିରେ କେନ୍ଦ୍ର ସରକାରଙ୍କ ଅନ୍ୟାୟ କାର୍ଯ୍ୟାନୁଷ୍ଠାନ ଯୋଗୁଁ ଏହି ଦୁଇଟି

ଓଡ଼ିଆ ଦେଶୀୟ ରାଜ୍ୟ ବିହାରରେ ରହିଗଲା । ଏହି ଦୁଇ ଓଡ଼ିଆ ଅଞ୍ଚଳକୁ ଓଡ଼ିଶାରେ ପୁନର୍ମିଶ୍ରଣ ପାଇଁ ଜନମତ ଜାଗ୍ରତ କରିବା ଉଦ୍ଦେଶ୍ୟରେ ଉତ୍କଳ ସମ୍ମିଳନୀ ତରଫରୁ ଚଳିତ ମେ ୧୮ ତାରିଖରେ "ଷଢ଼େଇକଳା-ଖରସୁଆଁ ଦିବସ" ରାଜ୍ୟରେ ପାଳନ ପାଇଁ ଡାକରା ଦିଆଗଲା ଏବଂ ସମ୍ମିଳନୀ ତରଫରୁ ସ୍ୱତନ୍ତ୍ର ଭାବେ କଟକରେ ପାଳନ କରିବା ପାଇଁ ସ୍ଥିର ହେଲା ।

୮. କଳିଙ୍ଗର ଆଦି ରାଷ୍ଟ୍ର ପୁରୁଷ ମହାମେଘ ବାହନ ଐର ଖାରବେଳଙ୍କ ଅମର ସ୍ମୃତିଚାରଣ ଉଦ୍ଦେଶ୍ୟରେ ମେ ୨୦ ତାରିଖରେ ଭୁବନେଶ୍ୱରରେ 'ଖାରବେଳ ଦିବସ' ପାଳନ କରାଯିବା ବିଷୟ ବିଚାର କରାଗଲା । ଅତିଥି ଏବଂ କାର୍ଯ୍ୟକ୍ରମ ପାଇଁ ପ୍ରେକ୍ଷାଳୟ ବ୍ୟବସ୍ଥା କରି ଏହି ଦିବସ ଆପାତତଃ ମେ ୨୦ କିମ୍ବା ସେଦିନ ସମ୍ଭବ ନ ହେଲେ, ପରବର୍ତ୍ତୀ ସମୟରେ ପାଳନ କରିବାକୁ ନିଷ୍ପତ୍ତି ନିଆଗଲା ।

୯. ଆମ ରାଜ୍ୟ ପ୍ରଦେଶ ଗଠନର ହୀରକ ଜୟନ୍ତୀ ପାଳନ କରୁଥିବା ବେଳେ ରାଜ୍ୟର ୧୮୪ଟି ସୀମାନ୍ତ ଗ୍ରାମ ସୀମା ବିବାଦ ଘେର ଭିତରେ ରହିଥିବା ଅତ୍ୟନ୍ତ ପରିତାପର ବିଷୟ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ, ରାଜ୍ୟ ସରକାର ରାଜ୍ୟର ସୀମା ସରହଦ ସୁରକ୍ଷା ପ୍ରତି ବିହିତ ଧ୍ୟାନ ଅଗ୍ରାଧିକାର ଭିତ୍ତିରେ ଦେଉନାହାନ୍ତି; ଯାହା ଫଳରେ ସୀମାନ୍ତ ଅଞ୍ଚଳ ଗୁଡ଼ିକରେ ଗୁରୁତର ପରିସ୍ଥିତି ସୃଷ୍ଟି ହୋଇ ରାଜ୍ୟବାସୀଙ୍କ ଧନଜୀବନ ବିପଦଗ୍ରସ୍ତ ହୋଇ ପଡୁଛି । ରାଜ୍ୟର ଭାଷା ସଂସ୍କୃତି ମଧ୍ୟ ସୁରକ୍ଷିତ ହୋଇ ପାରୁନାହିଁ । ବହୁବିଧ ଭାବରେ ବିଭିନ୍ନ ଆଳ ଦେଇ ରାଜ୍ୟ ବାହାରୁ ବ୍ୟବସାୟୀମାନେ ସୀମା ମଧ୍ୟକୁ ଅନୁପ୍ରବେଶ କରିବା ଫଳରେ ଏବଂ ସେମାନଙ୍କୁ ସମୁଚିତ ଭାବେ ନିୟନ୍ତ୍ରିତ ନ କରାଯାଉ ଥିବାରୁ ରାଜ୍ୟବାସୀଙ୍କର ଆର୍ଥିକ ଅବସ୍ଥାରେ ଭାରସାମ୍ୟ ରକ୍ଷା କରାଯାଇ ପାରୁନାହିଁ । ଏହି ପରିସ୍ଥିତି ଦିନକୁ ଦିନ ଗୁରୁତର ରୂପ ଧାରଣ କରି ସୀମାନ୍ତ ଅଞ୍ଚଳ ଗୁଡ଼ିକରେ ଉଦ୍‌ବେଗ ଜନକ ପରିସ୍ଥିତି ସୃଷ୍ଟି କରୁଛି । ରାଜ୍ୟ ସରକାର ଏବଂ ସରକାରୀ କଳ ଏହି ସମସ୍ୟାପ୍ରତି ସମୁଚିତ ଧ୍ୟାନ ଦେବା ପାଇଁ ଏହି ବୈଠକ ଅନୁରୋଧ କରୁଅଛି ।

୧୦. ନିକଟରେ ଭାରତୀୟ ଜନତା ପାର୍ଟିର କେନ୍ଦ୍ରୀୟ ମହାସଚିବ ଶ୍ରୀ ଗୋବିନ୍ଦାଚାର୍ଯ୍ୟ 'ପଶ୍ଚିମ ଓଡ଼ିଶା ପ୍ରଦେଶ' ଗଠନ ଦାବୀକୁ ତାଙ୍କ ଦଳ ସମର୍ଥନ କରିବ ବୋଲି ଯେଉଁ ବିବୃତ୍ତି ଦେଇଛନ୍ତି, ଉତ୍କଳ ସମ୍ମିଳନୀ ତାର ଦୃଢ଼ ପ୍ରତିବାଦ କରିବା ସଙ୍ଗେ ସଙ୍ଗେ ରାଜ୍ୟ ସରକାରଙ୍କୁ ଅନୁରୋଧ କରୁଛି ଯେ ରାଜ୍ୟର ସମସ୍ତ କ୍ଷେତ୍ରରୁ ବୈଷମ୍ୟ ଦୂର କରି ସବୁ ଅଞ୍ଚଳର ସମ ବିକାଶ ଦିଗରେ ବିଧିବଦ୍ଧ ଯୋଜନା ପ୍ରସ୍ତୁତ ପୂର୍ବକ ରାଜ୍ୟବାସୀଙ୍କ ମନରେ ସଂହତି ସୃଷ୍ଟି ହେଲା ଭଳି ବିହିତ ପଦକ୍ଷେପ ଗ୍ରହଣ କରନ୍ତୁ ।

୧୧. ଅଣ ଓଡିଆମାନଙ୍କୁ ଓଡିଆ ଭାଷା ଶିକ୍ଷା ଦେବାପାଇଁ ଉତ୍କଳ ସମ୍ମିଳନୀ ତରଫରୁ ଏକ ପ୍ରତିଷ୍ଠାନ ଗଠନ କରି ଭାଷାର ପ୍ରସାର ଦିଗରେ ସଫଳ କାର୍ଯ୍ୟକ୍ରମ ନେବା ପାଇଁ ଆଲୋଚନା ହେଲା । ବିଶିଷ୍ଟ ଭାଷାବିତ୍ ଡ: ଅରବିନ୍ଦ ପଟ୍ଟନାୟକଙ୍କ ନେତୃତ୍ୱରେ ଆଚାର୍ଯ୍ୟ ଭାବାନନ୍ଦ ଓ ଡ: ଗୋପାଳକୃଷ୍ଣ ଶ୍ରୀଚନ୍ଦନ ସଭ୍ୟ ଥାଇ ଏକ କମିଟି ଗଠନ କରାଗଲା । ଏହି କମିଟି ଓଡିଆ ଭାଷା ଶିକ୍ଷା କେନ୍ଦ୍ର ଯୋଜନା ସମ୍ପର୍କୀୟ ପାଠ୍ୟକ୍ରମ ଉପରେ ଏକ ଖସଡା ପ୍ରସ୍ତୁତ କରି ପରବର୍ତ୍ତୀ କାର୍ଯ୍ୟକାରୀ କମିଟି ବୈଠକରେ ବିଚାର କରିବା ପାଇଁ ଉପସ୍ଥାପିତ କରିବେ ବୋଲି ସ୍ଥିର ହେଲା ।

୧୨. ଚଳିତ କାର୍ଯ୍ୟକ୍ରମ ସମିତି ଗଠିତ ହେବା ଦିନଠାରୁ ନିମ୍ନଲିଖିତ ମାନ୍ୟବର ସଭ୍ୟମାନେ ଆଦୌ କାର୍ଯ୍ୟକାରୀ ସମିତି ବୈଠକରେ ଯୋଗଦେଇ ନାହାନ୍ତି । ସେମାନଙ୍କୁ ବାଦ ଦିଆଯାଇ ସେମାନଙ୍କ ସ୍ଥାନରେ ନିମ୍ନଲିଖିତ ଆଜୀବନ ସଭ୍ୟମାନଙ୍କୁ କାର୍ଯ୍ୟକାରୀ ସମିତିର ସହଯୋଗୀ ସଭ୍ୟ ରୂପେ ନେବାପାଇଁ ସ୍ଥିର ହେଲା । ବାଦ୍ ପଡିଥିବା ସଭ୍ୟଙ୍କ ନାମ ହେଲା : (୧) ଶ୍ରୀ ଅଇଁଠୁ ସାହୁ (୨) ଶ୍ରୀ କୁମୁଦ ଚନ୍ଦ୍ର ମଲ୍ଲିକ (୩) ଶ୍ରୀ ଶ୍ରୀରାମ ଦାସ । ନୂତନ ମନୋନୀତ ସହଯୋଗୀ ସଭ୍ୟଙ୍କ ନାମ ହେଲା : (୧) ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର (୨) ଶ୍ରୀ ପଦ୍ମଚରଣ ନାୟକ (୩) ଶ୍ରୀ ଶ୍ରୀଚରଣ ସ୍ୱାଇଁ ।

ସ୍ୱତନ୍ତ୍ର ନିମନ୍ତ୍ରିତ : ଡକ୍ଟର ଅରବିନ୍ଦ ପଟ୍ଟନାୟକ ।

୧୩. 'ଓଡିଆ ଭାଷା ବର୍ଷ' ପାଳନକୁ ସଫଳ କରିବା ଉଦ୍ଦେଶ୍ୟରେ ଆଗାମୀ ମେ ୨୪ ତାରିଖରେ ଭୁବନେଶ୍ୱରସ୍ଥ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟଠାରେ ବିଭିନ୍ନ ଅମଲା ସଙ୍ଘ ଓ ଅଫିସର୍ ସଙ୍ଘ କର୍ମକର୍ତ୍ତାମାନଙ୍କ ସହ ସାକ୍ଷାତ ଆଲୋଚନା କରାଯାଇ ଭବିଷ୍ୟତ କର୍ମପନ୍ଥା ନିର୍ଦ୍ଧାରଣ କରିବା ପାଇଁ ସ୍ଥିର ହେଲା ।

୧୪. ସମ୍ମିଳନୀର ଗୃହୀତ ପ୍ରସ୍ତାବଗୁଡିକ ତ୍ୱରାନ୍ୱିତ ଭାବେ କାର୍ଯ୍ୟକାରୀ କରିବା ନିମନ୍ତେ ଏକ କାର୍ଯ୍ୟକ୍ରମ 'କାର୍ଯ୍ୟକାରୀ କମିଟି'ର ନିମ୍ନଲିଖିତ ସଭ୍ୟମାନଙ୍କୁ ନେଇ ଗଠିତ ହେଲା । ଅନ୍ୟ ସଭ୍ୟମାନଙ୍କୁ ଆବଶ୍ୟକତାକୁ ଚାହିଁ ଏହି କମିଟି ବୈଠକକୁ ଡକାଯାଇ ପାରିବ ବୋଲି ସ୍ଥିର ହେଲା ।

(୧) ହରିଶ୍ଚନ୍ଦ୍ର ବକ୍ସିପାତ୍ର (୨) ବସନ୍ତ କୁମାର ପାଣିଗ୍ରାହୀ (୩) ଆଚାର୍ଯ୍ୟ ଭାବାନନ୍ଦ (୪) ଶ୍ରୀଚରଣ ସ୍ୱାଇଁ (୫) ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର (୬) ପଦ୍ମଚରଣ ନାୟକ (୭) ସତ୍ୟ ଦାଶ (୮) ଡକ୍ଟର ଗୋପାଳକୃଷ୍ଣ ଶ୍ରୀଚନ୍ଦନ ।

୧୫. ଶିକ୍ଷକ ସଙ୍ଘ ଏବଂ ବିଜ୍ଞାନ ପ୍ରଚାର ପ୍ରତିଷ୍ଠାନ ତଥା ପୁସ୍ତକ ପ୍ରଣୟନ ସଂସ୍ଥାମାନଙ୍କର କର୍ମକର୍ତ୍ତାମାନଙ୍କ ସହ ଏକ ବୈଠକରେ ମିଳିତ ହୋଇ 'ଓଡିଆ ଭାଷା ବର୍ଷ' ପାଳନକୁ ସଫଳ କରିବା ନିମନ୍ତେ କାର୍ଯ୍ୟପନ୍ଥା ନିର୍ଣ୍ଣୟ କରିବା ପାଇଁ ସ୍ଥିର ହେଲା ।

୧୬. ଝାରସୁଗୁଡା, କେନ୍ଦୁଝରେ (ବରପଦା ଛକ - ବଡବିଲ୍, କିରିବୁରୁ, ଯୋଡା, ବଲାନି ଶିଳ୍ପାଞ୍ଚଳ), ଖଡିଆଳ - ନୂଆପଡା, ରାୟଗଡ, ଗଜପତି ଜିଲ୍ଲା, ମୟୁରଭଞ୍ଜ ପ୍ରଭୃତି ଅଞ୍ଚଳରେ ବୈଠକମାନ ଡକାଇ ଶାଖା ଗଠନ ଓ ବିଦ୍ୟାଳୟମାନଙ୍କରେ ଓଡିଆ ଭାଷା ଶିକ୍ଷା ଓ ପ୍ରଚଳନ ସଂପର୍କରେ ସଘନ ପଦକ୍ଷେପ ନେବା ପାଇଁ ସ୍ଥିର ହେଲା ।

୧୭. ଶାଖାମାନଙ୍କ ଦ୍ୱାରା ସଂଗୃହୀତ ଆଜୀବନ ସଭ୍ୟ ଚାନ୍ଦା କେନ୍ଦ୍ର କାର୍ଯ୍ୟାଳୟକୁ ଆସିବ ଏବଂ ଅନ୍ୟ ସମସ୍ତ ପ୍ରକାରର ଚାନ୍ଦା ଶାଖାମାନେ ସେମାନଙ୍କ ଖର୍ଚ୍ଚ ପାଇଁ ରଖିବେ ବୋଲି ନୀତିଗତ ଭାବେ ସ୍ଥିର ହେଲା ।

୧୮.କ) ସଭ୍ୟ ଡାକ୍ତର ଗୁରୁପ୍ରସାଦ ମହାନ୍ତି ପ୍ରସ୍ତାବ ଦେଲେ ଯେ ଓଡିଆ ଭାଷାରେ ସରକାରୀ କାର୍ଯ୍ୟ କରୁଥିବା କାର୍ଯ୍ୟାଳୟମାନଙ୍କୁ ପ୍ରଶଂସା ପତ୍ର ତଥା ସମ୍ବର୍ଦ୍ଧନା ଜ୍ଞାପନ କରାଯିବା ବ୍ୟବସ୍ଥା କାର୍ଯ୍ୟକାରୀ ହେଉ ।

ଖ) ପୁନଶ୍ଚ ସେ ପ୍ରସ୍ତାବ ଦେଇଥିଲେ - ଓଡିଶା ପାଇଁ ବିଭିନ୍ନ ଅଧିବେଶନ ଓ ବୈଠକ ଆରମ୍ଭରେ ଉତ୍କଳ ବନ୍ଦନା - ''ବନ୍ଦେ ଉତ୍କଳ ଜନନୀ'' ଗାନ କରାଯାଉ ଏବଂ ଏହି ଦେଶ ବନ୍ଦନା ଗାନ ସମୟରେ ସମବେତ ସମସ୍ତେ ଦଣ୍ଡାୟମାନ ହୁଅନ୍ତୁ । ଏହି ଦୁଇଟି ପ୍ରସ୍ତାବ ଗୃହୀତ ହୋଇଥିଲା ।

୧୯.କ) ସଭ୍ୟ ଶ୍ରୀ ବିଚିତ୍ରାନନ୍ଦ ସାହୁ ପଶ୍ଚିମ ଓଡିଶା ଓ ରାଉରକେଲା ପରି ଶିଳ୍ପାଞ୍ଚଳରେ ଇଂଲିଶ ମାଧ୍ୟମ ବିଦ୍ୟାଳୟମାନଙ୍କରେ ହିନ୍ଦୀ ପଢ଼ାଯାଉଛି ଅଥଚ ଓଡିଆ ଭାଷା ବାଧ୍ୟତାମୂଳକ ଭାବେ ପଢ଼ାଯାଉ ନ ଥିବାରୁ କ୍ଷୋଭ ପ୍ରକାଶ କରିଥିଲେ । ଓଡିଆ ଭାଷା ଶିକ୍ଷାକୁ ପ୍ରାଥମିକ ସ୍ତରରେ ବାଧ୍ୟତାମୂଳକ ଭାବେ ପଢ଼ାଯିବା ପାଇଁ ସଂପୃକ୍ତ ଶିକ୍ଷାୟତନ ତଥା ସରକାରଙ୍କ ଉପରେ ଚାପ ପକାଯିବା ପାଇଁ ସ୍ଥିର ହେଲା ।

ଖ) ଶ୍ରୀ ସାହୁ ସମ୍ମିଳନୀର କେନ୍ଦ୍ର କାର୍ଯ୍ୟାଳୟର କାର୍ଯ୍ୟ ପରିସର ବହୁତ ବଢ଼ିଯାଇଥିବା ଉପଲବ୍ଧି କରି ସାମୟିକ କର୍ମଚାରୀ ନିଯୁକ୍ତ କରି ବକେୟା କାମ ସମ୍ପୂର୍ଣ୍ଣ କରିବା ନିମନ୍ତେ ଆଗାମୀ ୬ ମାସ ପାଇଁ ଆର୍ଥିକ ସାହାଯ୍ୟ କରିବାକୁ ଘୋଷଣା କରିଥିଲେ । ଉପସ୍ଥିତ ସଭ୍ୟମାନେ ଶ୍ରୀ ସାହୁଙ୍କ ଏପରି ଉତ୍ସାହପ୍ରଦ ମନୋଭାବକୁ ସାଧୁବାଦ ଜଣାଇଥିଲେ ।

୨୦. ଓଡିଆରେ ନାମ ଫଳକ ଓ ବିଜ୍ଞାପନ ଫଳକ ଲେଖିବା ପାଇଁ ପୁନଶ୍ଚ ଓଡିଶା ବଣିକ ସଙ୍ଘକୁ ଲେଖାଯିବା ପାଇଁ ସ୍ଥିର ହେଲା ।

୨୧. ମେ ୨୫ ପରେ ଓ ଡିସେମ୍ବର ମଧ୍ୟରେ ଉପାନ୍ତ ଅଞ୍ଚଳର ୨୦ ଗୋଟି ହାଇସ୍କୁଲକୁ ଯାଇ ପ୍ରଧାନ ଶିକ୍ଷକଙ୍କ ସହ ଯୋଗାଯୋଗ କରି ସଭା ସମିତି ମାଧ୍ୟମରେ ଓଡିଆ ଭାଷା ଶିକ୍ଷା ଓ ବହୁଳ ପ୍ରଚଳନ ସମ୍ପର୍କରେ ଜନମତ ସୃଷ୍ଟି କରାଯିବାପାଇଁ ସ୍ଥିରହେଲା ।

ସ୍ଥାନୀୟ ସାମ୍ବାଦିକମାନଙ୍କ ମାଧ୍ୟମରେ କାର୍ଯ୍ୟକ୍ରମ ବିବରଣୀ ପତ୍ର ପତ୍ରିକାରେ ପ୍ରଚାର କରାଯିବା ପାଇଁ ନିଷ୍ପତ୍ତି ନିଆଗଲା ।

ଶେଷରେ ସଭାପତିଙ୍କୁ ଧନ୍ୟବାଦ ଜଣାଇ ସଭା ସାଙ୍ଗ ହେଲା ।

| | | |
|---|---|---|
| ଗୋପାଳକୃଷ୍ଣ ଶ୍ରୀଚନ୍ଦନ | ବସନ୍ତ କୁମାର ପାଣିଗ୍ରାହୀ | ହରିଶ୍ଚନ୍ଦ୍ର ବକ୍ସିପାତ୍ର |
| ସଚିବ | ମହାସଚିବ | ସଭାପତି |

## ତା-୧୬-୧୧-୯୭ ରିଖ (ରବିବାର) ପୂର୍ବାହ୍ନ ୯ ଘଣ୍ଟାରେ ଅନୁଷ୍ଠିତ ଅଣଆନୁଷ୍ଠାନିକ ବୈଠକ ବିବରଣୀ

ଉପସ୍ଥିତ ସଭ୍ୟ :

(୧) ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଉପସଭାପତି (୨) ଅନ୍ନପୂର୍ଣ୍ଣା ମିଶ୍ର (୩) ଆଚାର୍ଯ୍ୟ ଭାବାନନ୍ଦ (୪) କୈଳାସ ଆଚାର୍ଯ୍ୟ (୫) ବଳରାମ ମହାନ୍ତି (୬) ଶ୍ରୀଚରଣ ସ୍ୱାଇଁ (୭) ପଦ୍ମଚରଣ ନାୟକ (୮) ପତିତପାବନ ପ୍ରଧାନ (୯) ସୁରେନ୍ଦ୍ରମୋହନ ପଣ୍ଡା (୧୦) ଗୋପାଳକୃଷ୍ଣ ଶ୍ରୀଚନ୍ଦନ (୧୧) ବସନ୍ତ କୁମାର ପାଣିଗ୍ରାହୀ ।

୧. ଆଗାମୀ ନଭେମ୍ବର ୩୦ରେ ଉପସଭାପତି, ମହାସଚିବ, ସଚିବ, କୋଷାଧ୍ୟକ୍ଷ ଏବଂ ଆଜିର ଉପସ୍ଥିତ ସଭ୍ୟମାନେ ସମ୍ମିଳନୀ କାର୍ଯ୍ୟାଳୟଠାରେ ପୂର୍ବାହ୍ନ ୧୦ ଟାରେ ଏକତ୍ରିତ ହୋଇ ଏ ଯାବତ୍ ହିସାବ ପ୍ରସ୍ତୁତ କରିବେ ।

୨. ସ୍ୱର୍ଗତ ବ୍ରଜସୁନ୍ଦର ଦାସ, ପୂର୍ବତନ ସାଧାରଣ ସମ୍ପାଦକ, ଉତ୍କଳ ସମ୍ମିଳନୀ, ଯଦୁମଣି ମଙ୍ଗରାଜ, ଶଶୀଭୂଷଣ ରଥ, ଶ୍ରୀବତ୍ସ ପଣ୍ଡା ପ୍ରମୁଖଙ୍କ ଆଲୋକ ଚିତ୍ର ସମ୍ମିଳନୀ କାର୍ଯ୍ୟାଳୟରେ ଅନ୍ୟ ବରପୁତ୍ର ଓ ସମ୍ମିଳନୀ କର୍ମକର୍ତ୍ତାଙ୍କ ଆଲୋକ ଚିତ୍ର ସହ ଉନ୍ମୋଚନ କରାଯିବ ।

୩. ଆଗାମୀ ଡିସେମ୍ବର ୭ ରେ 'ଓଡିଆ ଭାଷା' ଉପରେ କାର୍ଯ୍ୟାଳୟ ପରିସର ମଧ୍ୟରେ ଆଲୋଚନା ଚକ୍ର ଅନୁଷ୍ଠିତ ହେବ ଅପରାହ୍ନ ୩ ଟାରୁ ୮ ଟା ମଧ୍ୟରେ । ଏଥିରେ ଉପସ୍ଥିତ ରହିବାକୁ ଶ୍ରୀ ଗଙ୍ଗାଧର ମହାପାତ୍ର ଓ ଶ୍ରୀ ଭାଗବତ ପ୍ରସାଦ ମହାନ୍ତି (ଶିକ୍ଷା ମନ୍ତ୍ରୀ) ଙ୍କୁ ଅନୁରୋଧ କରାଯିବ । ଆନୁଷ୍ଠାନିକ ଭାବେ କାର୍ଯ୍ୟାଳୟ ଆରମ୍ଭ ହେବ ।

୪. ଝାଡଖଣ୍ଡ ରାଜ୍ୟ ଗଠନ ପାଇଁ ବିହାର ବିଧାନସଭା ପ୍ରସ୍ତାବ ପରିପ୍ରେକ୍ଷୀରେ ଆଗାମୀ ଡିସେମ୍ବର ପ୍ରଥମ ପକ୍ଷରେ ଦିଲ୍ଲୀଠାରେ ଓଡିଶାର ସାଂସଦମାନଙ୍କୁ ଭେଟି ଆଲୋଚନା କରିବାକୁ ଏକ ପ୍ରତିନିଧି ମଣ୍ଡଳ ଯିବା ପାଇଁ ସ୍ଥିର ହେଲା ।

୫. ସେହି ସମୟରେ କଳିଙ୍ଗ ଶିକ୍ଷା ସମାଜ, ନୂଆଦିଲ୍ଲୀଠାରୁ ପ୍ରାପ୍ତ ପତ୍ରରେ ଉଲ୍ଲେଖିତ ବିଷୟରେ ଅନୁଧ୍ୟାନ କରାଯିବ ।

୬. ଶ୍ରୀ ପତିତପାବନ ପ୍ରଧାନ, ଝାରସୁଗୁଡା ଜିଲ୍ଲା ଶାଖା ଗଠନ ଏବଂ ସେଠାରେ ଆଗାମୀ ବାର୍ଷିକ ଅଧିବେଶନ କରାଇବା ଦିଗରେ ବିହିତ ପଦକ୍ଷେପ ନେବାକୁ ପ୍ରତିଶ୍ରୁତି ଦେଲେ ।

୭. ପୂର୍ବ ଉପକୂଳ (ରାଜନଗର ଅଞ୍ଚଳ), ପଶ୍ଚିମ ଓଡିଶା ଏବଂ ଦକ୍ଷିଣ ଓଡିଶା (ବିଷମ କଟକ ଅଞ୍ଚଳ) ରେ ଅନୁପ୍ରବେଶ ପାଇଁ ଉଦ୍‌ବେଗ ପ୍ରକାଶ କରାଗଲା ଏବଂ ତାହା ବନ୍ଦ କରିବା ପାଇଁ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ସ୍ଥିର ହେଲା ।

୮. ପରିବର୍ତ୍ତିତ ପରିପ୍ରେକ୍ଷୀରେ ଓଡିଶା ବିଧାନ ସଭାରେ ଆଉଥରେ ଷଢ଼େଇକଳା-ଖରସୁଆଁର ଓଡିଶା ସହ ପୁନଃମିଶ୍ରଣ ସମ୍ପର୍କରେ ଆଲୋଚନା ଓ ସର୍ବସମ୍ମତ ପ୍ରସ୍ତାବ ଗ୍ରହଣ ପାଇଁ ରାଜ୍ୟ ସରକାରଙ୍କର ଦୃଷ୍ଟି ଆକର୍ଷଣ କରି ଅନୁରୋଧ କରାଯିବା ପାଇଁ ସ୍ଥିର ହେଲା ।

ଉପସ୍ଥିତ ସମସ୍ତଙ୍କୁ ଧନ୍ୟବାଦ ଅର୍ପଣ କରାଯାଇ ସଭା ସାଙ୍ଗ ହେଲା ।

ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ସଚିବ                    ବସନ୍ତ କୁମାର ପାଣିଗ୍ରାହୀ, ମହାସଚିବ

## ତା-୭-୧୨-୯୭ ରବିବାର ପୂର୍ବାହ୍ନ ଘ୧୦:୩୦ମି. ସମୟରେ ଭୁବନେଶ୍ୱରସ୍ଥ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟଠାରେ ଅନୁଷ୍ଠିତ କାର୍ଯ୍ୟକାରୀ ସମିତି ବୈଠକ ବିବରଣୀ

ଉପସ୍ଥିତ ସଭ୍ୟ :

(୧) ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଉପସଭାପତି (୨) ପଦ୍ମଚରଣ ନାୟକ (୩) ଆଚାର୍ଯ୍ୟ ଭାବାନନ୍ଦ (୪) ବଳରାମ ମହାନ୍ତି (୫) ବସନ୍ତ କୁମାର ତ୍ରିପାଠୀ (୬) ଅନ୍ନପୂର୍ଣ୍ଣା ମିଶ୍ର (୭) ଅରବିନ୍ଦ ପଟ୍ଟନାୟକ (୮) ଶ୍ରୀଚରଣ ସ୍ୱାଇଁ (୯) ବନଓ୍ୱାରିଲାଲ ଢାଲ (୧୦) କୈଳାସ ଆଚାର୍ଯ୍ୟ (୧୧) ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ସଚିବ (୧୨) ବସନ୍ତ କୁମାର ପାଣିଗ୍ରାହୀ, ମହାସଚିବ ।

ସଭାପତିଙ୍କ ଅନୁପସ୍ଥିତିରେ ଉପସଭାପତି ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ସଭାପତିତ୍ୱରେ ବୈଠକ ଆରମ୍ଭ ହୋଇଥିଲା ।

ଗତ ବୈଠକ ବିବରଣୀ ପାଠ କରାଯାଇ ତାହା ଠିକ୍ ଥିବାରୁ ଦୃଢ଼ୀକୃତ ହେଲା ଏବଂ ପ୍ରସ୍ତାବଗୁଡିକର କାର୍ଯ୍ୟକାରିତା ସମ୍ପର୍କରେ ସମୀକ୍ଷା କରାଗଲା ।

୧.କ) ଗତ ବୈଠକ ବିବରଣୀ ସମୀକ୍ଷାରୁ ଜଣାଗଲା, ରାଜ୍ୟ ସରକାର ଏକ ଗୃହ (ଭି.ଏ.-

୨୦/୩), ୟୁନିଟ୍-୨, ଭୁବନେଶ୍ୱର-୯ ରେ ଦେଇଛନ୍ତି ଏବଂ ତାହା ଗତ ୨୦.୯.୯୭ ତାରିଖରୁ ସମ୍ମିଳନୀଙ୍କ ଅଧିକାରକୁ ଆସିଅଛି । ଏହା ମାସିକ ଭଡା ୪୭୨ ଟଙ୍କା ଧାର୍ଯ୍ୟ କରାଯାଇଅଛି । ଏହି ହାରରେ ଗତ ଅକ୍ଟୋବର ଏବଂ ନଭେମ୍ବର ମାସର ଭଡା ନିର୍ଦ୍ଦିଷ୍ଟ ତାରିଖ ମଧ୍ୟରେ ଜମା ଦିଆଯାଇଅଛି ।

ଏ ପ୍ରସଙ୍ଗ ଆଲୋଚନା କରାଯାଇ ଏହି ଗୃହର ଭଡା ବାବଦରେ ସରକାର ନାମମାତ୍ର ଭଡା (ମାସିକ ଏକ ଟଙ୍କା) ଧାର୍ଯ୍ୟ କରିବା ପାଇଁ ଅନୁରୋଧ କରାଯିବ ବୋଲି ଏକ ସର୍ବସମ୍ମତ ପ୍ରସ୍ତାବ ଗୃହୀତ ହୋଇଥିଲା । ଗୃହ ଯୋଗାଇ ଦେଇଥିବାରୁ କାର୍ଯ୍ୟକାରୀ ସମିତି ତରଫରୁ ସରକାରଙ୍କୁ ଧନ୍ୟବାଦ ଅର୍ପଣ ପୂର୍ବକ ଉପଯୁକ୍ତ ପ୍ରସ୍ତାବକୁ ସଦୟ ବିଚାର କରି ବିହିତ ଆଦେଶ ପ୍ରଦାନ ନିମନ୍ତେ ପୁନରାୟ ଅନୁରୋଧ କରାଗଲା ।

ଖ) ବିକଳ୍ପ ବ୍ୟବସ୍ଥା ପର୍ଯ୍ୟନ୍ତ କାର୍ଯ୍ୟାଳୟ ଗୃହର ରକ୍ଷଣାବେକ୍ଷଣ ଓ ପରିଚାଳନା ସଚିବ ଡ: ଶ୍ରୀଚନ୍ଦନ ଓ ସଭ୍ୟ ଶ୍ରୀଚରଣ ସ୍ୱାଇଁ ବ୍ୟବସ୍ଥା କରିବାକୁ ଅନୁରୋଧ କରାଗଲା ।

୨.କ) ଏକାଧିକ ଥର ପତ୍ରାଳାପ ସତ୍ତ୍ୱେ ସଭ୍ୟ ଚାନ୍ଦା ଆଦାୟକାରୀମାନଙ୍କଠାରୁ ସଂଗୃହୀତ ସଭ୍ୟଚାନ୍ଦା ଅର୍ଥ ଏବଂ ଆଜୀବନ ସଭ୍ୟ ତାଲିକା ମିଳିପାରି ନଥିବାରୁ ଏ ଯାବତ୍ ଆଜୀବନ ସଭ୍ୟ ତାଲିକା ପୂର୍ଣ୍ଣାଙ୍ଗ ହୋଇ ପାରୁନାହିଁ ଏବଂ ସମ୍ପୃକ୍ତ ଆଜୀବନ ସଭ୍ୟମାନଙ୍କୁ ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗଦେବା ପାଇଁ ନିମନ୍ତ୍ରଣ ପଠାଯାଇ ପାରୁନାହିଁ ବୋଲି ସଚିବ ଶ୍ରୀଚନ୍ଦନ ପ୍ରକାଶ କଲେ ।

ଖ) ବହୁ ଆଲୋଚନା ପାରେ ସ୍ଥିର ହେଲା, ୧୯୮୧ ମସିହାରେ ମହାସଚିବ ବିଭିନ୍ନ ଅଞ୍ଚଳର ଆଦାୟକାରୀମାନଙ୍କୁ ଦେଇଥିବା ବାର୍ଷିକ ସଭ୍ୟ ଚାନ୍ଦା ରସିଦ ବହି ଫେରସ୍ତ ଦେବାକୁ ବାରମ୍ବାର ଅନୁରୋଧ ସତ୍ତ୍ୱେ ଯେଉଁ କ୍ଷେତ୍ରରେ ମିଳି ନାହିଁ, ଆଉଥରେ ସ୍ମାରକ ପଠାଯିବ ଏବଂ ଉତ୍ତର ସହିତ ରସିଦ ବହି ନ ମିଳିଲେ ସେହି ରସିଦ ବହି ଗୁଡିକୁ ରସିଦ ବହି ହିସାବରୁ ବାଦ୍ ଦିଆଯିବ । ମାତ୍ର ଆଦାୟକାରୀ ଯଦି ଆଜୀବନ ସଭ୍ୟ ହୋଇଥିବେ, ତାଙ୍କଠାରୁ ସନ୍ତୋଷଜନକ ଉତ୍ତର ପାଇବା ପାଇଁ ଉଦ୍ୟମ ଜାରି ରହିବ ।

ଗ) ଆଜୀବନ ସଭ୍ୟଚାନ୍ଦା ବହି ମିଳି ନ ଥିବା କ୍ଷେତ୍ରରେ ପୁନରାୟ ପତ୍ର ଦିଆଯିବ ଏବଂ ଆଗାମୀ ଡିସେମ୍ବର ୨୫ ତାରିଖ ମଧ୍ୟରେ ସଭ୍ୟ ଚାନ୍ଦା ଓ ରସିଦ ବହି ହିସାବ ଠିକ୍ କରି ରଖିଲେ କେନ୍ଦ୍ର କାର୍ଯ୍ୟାଳୟ ତରଫରୁ ପ୍ରତିନିଧି ପଠାଯାଇ ତାହା ସଂଗ୍ରହ କରାଯିବ ବୋଲି ଉକ୍ତ ପତ୍ରରେ ଉଲ୍ଲେଖ କରାଯିବ । ମିଳି ନ ଥିବା ସଭ୍ୟ ଚାନ୍ଦା ରସିଦ ବହିରେ ଆଜୀବନ ସଭ୍ୟ ହୋଇଥିବା ବ୍ୟକ୍ତିମାନଙ୍କ ଦୃଷ୍ଟି ଆକର୍ଷଣ ପାଇଁ ଖବର କାଗଜରେ ଏକ ବିଜ୍ଞପ୍ତି ପ୍ରକାଶ କରିବା ପାଇଁ ସ୍ଥିର ହେଲା । ସମ୍ପୃକ୍ତ ସଭ୍ୟ ଆଜୀବନ

ସଭ୍ୟ ଚାନ୍ଦା ଦେଇଛନ୍ତି ବୋଲି ପ୍ରମାଣ (ରସିଦ) ଦର୍ଶାଇଲେ ତାଙ୍କ ନାମ ସଭ୍ୟ ତାଲିକାଭୁକ୍ତ କରାଯିବା ପାଇଁ ବିଚାର କରାଯିବ ବୋଲି ସ୍ଥିର ହେଲା ।

୩.କ) ୧୯୯୬-୯୭ ଆର୍ଥିକ ବର୍ଷ ଏବଂ ଚଳିତ ଆର୍ଥିକ ବର୍ଷର ଏ ଯାବତ୍ ଆୟ ବ୍ୟୟ ସମ୍ପର୍କରେ କୋଷାଧ୍ୟକ୍ଷ ଏବଂ ମହାସଚିବ ସୂଚନା ଦେଇଥିଲେ । ଆସନ୍ତା ୧୩ ରୁ ୧୫ ଡିସେମ୍ବର ମଧ୍ୟରେ ମହାସଚିବ, ସଚିବ, କୋଷାଧ୍ୟକ୍ଷ ଏବଂ ଆୟ ବ୍ୟୟ ସହ ସମ୍ପୃକ୍ତ ସଭ୍ୟ ଏକତ୍ର ବସି ଆୟ ବ୍ୟୟ ହିସାବ ଚୂଡାନ୍ତ କରିବେ ବୋଲି ସ୍ଥିର ହେଲା ।

ଖ) ପୁରୀ ଶାଖା ଆଦାୟ କରିଥିବା ଆଜୀବନ ସଭ୍ୟ ଚାନ୍ଦାରୁ ୩୦୦ ଟଙ୍କା ଏବଂ କଟକ ଶାଖା ୭୦୦ ଟଙ୍କା ଆନୁଷ୍ଠାନିକ କାର୍ଯ୍ୟକ୍ରମରେ ଖର୍ଚ୍ଚ କରିଥିବା ବିଷୟ ମହାସଚିବ ପ୍ରକାଶ କରିଥିଲେ । ସମ୍ପୃକ୍ତ ଶାଖା ଖର୍ଚ୍ଚ ବିବରଣୀ (ଭାଉଚର୍) ଦାଖଲ କଲେ, ତାହା ମହୁରା କରାଯିବା ପାଇଁ ପଦକ୍ଷେପ ନିଆଯିବ ବୋଲି ସ୍ଥିର ହେଲା ।

ଗ) ଆଜୀବନ ସଭ୍ୟ ଶ୍ରୀ କୈଳାସ ଆଚାର୍ଯ୍ୟ ଆଜୀବନ ସଭ୍ୟ ଚାନ୍ଦାରୁ ସଂଗୃହୀତ ଅର୍ଥ ସ୍ଥାୟୀ ଜମା ଭାବେ ବ୍ୟାଙ୍କ ପଇଠ ହେବା ପାଇଁ ମତ ଦେଇଥିଲେ । ମହାସଚିବ କହିଲେ - ଆଜୀବନ ସଭ୍ୟ ଚାନ୍ଦାରୁ ୩୦ ହଜାର ଟଙ୍କା (ଭୁବନେଶ୍ୱରରେ ୨୦ ହଜାର ଟଙ୍କା ଏବଂ ବ୍ରହ୍ମପୁରରେ ୧୦ ହଜାର ଟଙ୍କା) ବ୍ୟାଙ୍କରେ ସ୍ଥାୟୀ ଜମା ରୂପେ ଗଚ୍ଛିତ ଅଛି । ଆଜୀବନ ସଭ୍ୟ ସଂଖ୍ୟା (ପାଖା ପାଖି) ୪୦୦ ହୋଇ ଥିବାରୁ ଆଉ ୧୦ ହଜାର ଟଙ୍କା ସ୍ଥାୟୀ ଜମା କରାଯିବା ପାଇଁ ଲକ୍ଷ୍ୟ ରଖାଯାଇଛି । ତାହା ନିକଟରେ କରାଯିବ ।

ଚାନ୍ଦା ରସିଦ୍ ବହି ଫେରିବାକୁ ଡେରି ହେଉଥିବାରୁ ପାଞ୍ଚଟିକିଆ ରସିଦ୍ ବହି ଆଦାୟକାରୀଙ୍କୁ ଦେଇ ତୁରନ୍ତ ସଭ୍ୟ ଚାନ୍ଦା ସଂଗ୍ରହ କରିବା ପାଇଁ ଶ୍ରୀ ଆଚାର୍ଯ୍ୟ ପରାମର୍ଶ ଦେଇଥିଲେ ।

୪. ଗତ ୨୫-୨-୯୭ ବୈଠକରେ ଗୃହୀତ ଏକାଦଶ ପ୍ରସ୍ତାବ ଅନୁଯାୟୀ ଅଣ ଓଡିଆମାନଙ୍କୁ ଓଡିଆ ଶିକ୍ଷା ପାଠ୍ୟକ୍ରମ ଉପରେ ଚିଠା ପ୍ରସ୍ତାବ ସେଥିପାଇଁ ଗଠିତ କମିଟିର ଅଧ୍ୟକ୍ଷ ଡ: ଅରବିନ୍ଦ ପଟ୍ଟନାୟକ ପେଶ କରିଥିଲେ । ଏହି ପାଠ୍ୟକ୍ରମକୁ କାର୍ଯ୍ୟକାରୀ କରିବା ପାଇଁ ଉତ୍କଳ ବିଦ୍ୟାଳୟ କୁଳପତି ମହୋଦୟଙ୍କ ସହ ପରାମର୍ଶ କରିବାକୁ ଡ: ପଟ୍ଟନାୟକଙ୍କୁ ଅନୁରୋଧ କରାଗଲା ।

୫.କ) ଓଡିଆ ଭାଷା ବର୍ଷ ପାଳନର ସଫଳତା ସମ୍ପର୍କରେ ସମୀକ୍ଷା କରାଗଲା । ବିଧାନ ସଭାର ଗତ ତ୍ରିଦିବସୀୟ ସ୍ୱତନ୍ତ୍ର ଅଧିବେଶନରେ ମାନ୍ୟବର ବିଧାୟକମାନେ ଇଂରାଜୀରେ ଭାଷଣ ଦେବା ବିଶେଷତଃ ବିରୋଧୀ ଦଳ ନେତା ଇଂରାଜୀ ଭାଷାରେ

ଚୂଡାନ୍ତ ପ୍ରସ୍ତାବଗୁଡିକ ଆଗତ କରିବା ଦୂର ଦର୍ଶନ ପ୍ରସାରଣରୁ ଜଣାଯାଇଥିଲା । ଏହା ରାଜ୍ୟର ସରକାରୀ ଭାଷା ରୂପେ ଗୃହୀତ 'ଓଡିଆ'ରେ ହେବା ଉଚିତ ଥିଲା ବୋଲି ସର୍ବସମ୍ମତ ମତ ପ୍ରକାଶ ପାଇ ଏଥି ପାଇଁ ଗଭୀର କ୍ଷୋଭ ପ୍ରକାଶ କରାଯାଇଥିଲା । ଆଉ ଓଡିଆ ଭାଷାକୁ ରାଜ୍ୟ ମଧ୍ୟରେ କୌଣସି ସ୍ଥଳରେ ଅବହେଳା ପ୍ରଦର୍ଶନ ନ କରିବା ପାଇଁ ପୁନରାୟ ଆହ୍ୱାନ୍ ଦିଆଗଲା ।

ଖ) ଓଡିଶା ବିଧାନ ସଭାରେ ବିଧେୟକ (ବିଲ୍) ଓଡିଆରେ ଏଣିକି ପେଶ୍ କରିବା ପାଇଁ ଅନୁରୋଧ ଜଣାଇ ଏକ ସର୍ବସମ୍ମତ ପ୍ରସ୍ତାବ ଗୃହୀତ ହେଲା ।

୬. ରାଜ୍ୟର ବିଶ୍ୱବିଦ୍ୟାଳୟମାନଙ୍କରେ ଓଡିଆ ମାଧ୍ୟମରେ ପି.ଏଚ୍.ଡି. ଓ ଏମ୍.ଫିଲ୍. ସନ୍ଦର୍ଭ କରିବା ପାଇଁ ଗବେଷକ-ଛାତ୍ରମାନଙ୍କୁ ସୁଯୋଗ ଦେବାକୁ ଅନୁରୋଧ ଜଣାଇ ପ୍ରସ୍ତାବ ଗୃହୀତ ହୋଇଥିଲା । ଏ ସମ୍ପର୍କରେ କୁଳପତିମାନଙ୍କୁ ପତ୍ର ଲେଖିବାକୁ ସ୍ଥିର ହେଲା ।

୭. ଚଳିତ ବର୍ଷ ଓଡିଆ ଭାଷା ବର୍ଷ ପାଳନ କାର୍ଯ୍ୟକ୍ରମ ବିଶେଷ ସଫଳତା ହାସଲ କରି ନ ଥିବାରୁ ଆସନ୍ତା ବର୍ଷକୁ 'ଓଡିଆ ଭାଷା ଆନ୍ଦୋଳନ' ବର୍ଷ ରୂପେ ପାଳନ କରିବା ପାଇଁ ସ୍ଥିର ହେଲା ଏବଂ ଏହି କାର୍ଯ୍ୟକ୍ରମ ଉତ୍କଳ ସମ୍ମିଳନୀର ଶତବାର୍ଷିକୀ ପାଳନ (୨୦୦୩ ଖ୍ରୀଷ୍ଟାବ୍ଦ) ପର୍ଯ୍ୟନ୍ତ ଚାଲୁ ରଖିବା ପାଇଁ ସର୍ବସମ୍ମତ ମତ ପ୍ରକାଶ ପାଇଲା ।

୮. ଜାନୁଆରୀ ୧୯୯୮ ପ୍ରଥମ ସପ୍ତାହରେ ସମ୍ମିଳନୀର ବାର୍ଷିକ ଅଧିବେଶନ ଝାରସୁଗୁଡାରେ କରାଯିବା ପାଇଁ ଆପାତତଃ ସ୍ଥିର ହେଲା । ସଭ୍ୟ ଶ୍ରୀ ବଳରାମ ମହାନ୍ତି ଓ ଶ୍ରୀ କୈଳାସ ଆଚାର୍ଯ୍ୟ ଝାରସୁଗୁଡା ଯାଇ ଏ ସମ୍ପର୍କୀୟ ବ୍ୟବସ୍ଥା ବିଷୟରେ ଆଲୋଚନା କରିବାକୁ ଅନୁରୋଧ କରାଗଲା ।

୯. ଏ ପର୍ଯ୍ୟନ୍ତ ସବୁ ଜିଲ୍ଲାରେ ଶାଖା ଗଠନ କରାଯାଇ ପାରିନାହିଁ । କେନ୍ଦ୍ରାପଡା ଜିଲ୍ଲା ଶାଖା ଗଠନ ପାଇଁ ପ୍ରାରମ୍ଭିକ ଆଲୋଚନା ହୋଇଛି । ଏହି ଶାଖା ଗଠନ ସହ ଅନ୍ୟ ଜିଲ୍ଲା ଗୁଡିକର ଶାଖା ଗଠନ ସମ୍ପର୍କରେ ପଦକ୍ଷେପ ନେବାକୁ ସ୍ଥିର ହେଲା । କେନ୍ଦ୍ରାପଡା ଜିଲ୍ଲା ଶାଖା ଗଠନ ସମ୍ପର୍କରେ କୋଷାଧ୍ୟକ୍ଷ ଆଚାର୍ଯ୍ୟ ଭାବାନନ୍ଦ ଯୋଗାଯୋଗ କରିବାକୁ ଅନୁରୋଧ କରାଗଲା ।

୧୦. ଶାଖା ଗଠନ ସାଙ୍ଗକୁ ସଭ୍ୟ ସଂଗ୍ରହ ଏବଂ ପାଣ୍ଠି ସଂଗ୍ରହ ପାଇଁ ନିବେଦନ କରାଯିବାକୁ ସ୍ଥିର ହେଲା ।

୧୧. ରାଜ୍ୟ ସରକାର ନିଜ ରାଜ୍ୟର ସୀମା ସୁରକ୍ଷିତ ରଖିବା ପାଇଁ ଦୃଢ଼ ପଦକ୍ଷେପ ନେବା ନିମନ୍ତେ ଆହ୍ୱାନ ଦିଆଗଲା । ଏବେ ବି ସୀମାନ୍ତରେ ୧୮୦ ଗୋଟି ଗ୍ରାମ ବିବଦମାନ ଅବସ୍ଥାରେ ରହି ଥିବାରୁ ସଭ୍ୟମାନେ ଘୋର ଉଦ୍‌ବେଗ୍ ପ୍ରକାଶ କରିଥିଲେ ।

୧୨. ଓଡିଶାର ଚାରିଗୋଟି ଜିଲ୍ଲା ପ୍ରସ୍ତାବିତ ଝାଡ଼ଖଣ୍ଡ ରାଜ୍ୟରେ ମିଶାଇବା ପାଇଁ ବିହାର ବିଧାନ ସଭାରେ ହୋଇଥିବା ପ୍ରସ୍ତାବର ପ୍ରତିବାଦ ରାଜ୍ୟ ସରକାର ଏ ପର୍ଯ୍ୟନ୍ତ କରି ନ ଥିବାରୁ ବୈଠକରେ କ୍ଷୋଭ ପ୍ରକାଶ କରାଯାଇଥିଲା ।

୧୩. ଆଗାମୀ ଲୋକ ସଭା ନିର୍ବାଚନରେ ବାହାର ରାଜ୍ୟର ଅଣ ଓଡିଆଙ୍କୁ ପ୍ରାର୍ଥୀ ନ କରାଇବା ପାଇଁ ରାଜନୈତିକ ଦଳମାନେ ସାବଧାନ ହେବାକୁ ଆହ୍ୱାନ ଦିଆଯାଇଥିଲା । ଏଥିରେ ବ୍ୟତିକ୍ରମ ଘଟିଲେ ତାହାର ଦୃଢ଼ ପ୍ରତିବାଦ କରିବା ପାଇଁ ସ୍ଥିର ହେଲା । ଏ ସମ୍ପର୍କରେ ରାଜନୈତିକ ଦଳ ମୁଖ୍ୟମାନଙ୍କୁ ପତ୍ର ଲେଖାଯିବାକୁ ସ୍ଥିର ହେଲା ।

୧୪. ଖାରବେଳଙ୍କ ଉପରେ 'ଗବେଷଣାତ୍ମକ ସଂକଳନ' ଏବଂ 'ଆମେ ଓଡ଼ିଆ' କବିତା ସଂକଳନ ପାଇଁ ନିଷ୍ପତ୍ତି ନିଆଗଲା । ଖାରବେଳ ଦିବସ ପାଳନ ହେବା ପାଇଁ ମଧ୍ୟ ସ୍ଥିର ହେଲା ।

୧୫. ରାଜ୍ୟ ମଧ୍ୟରେ ଓଡିଆକୁ ସରକାରୀ ଭାଷା ରୂପେ ପ୍ରଚଳନ କରିବାକୁ ସୁନିଶ୍ଚିତ କରିବା, ବିଚ୍ଛିନ୍ନାଞ୍ଚଳରେ ଓଡିଆ ଭାଷା-ସଂସ୍କୃତିର ସୁରକ୍ଷା ପ୍ରତି ପଦକ୍ଷେପ ନେବା ଏବଂ ବିଭିନ୍ନ ରାଜ୍ୟରେ ବସବାସ କରୁଥିବା ଓଡିଆମାନଙ୍କର ସ୍ୱାର୍ଥରକ୍ଷା କରିବା ଦିଗରେ ବିହିତ ଫଳପ୍ରଦ ବ୍ୟବସ୍ଥା କରିବା ପାଇଁ ଅଙ୍ଗୀକାରବଦ୍ଧତାକୁ ଆଗାମୀ ଲୋକ ସଭା ନିର୍ବାଚନୀ ଇସ୍ତାହାରରେ ଘୋଷଣା କରିବାକୁ ରାଜନୈତିକ ଦଳମାନଙ୍କୁ ଅନୁରୋଧ କରାଯିବା ନିମନ୍ତେ ସ୍ଥିର ହେଲା ।

ସଭାପତିଙ୍କୁ ଧନ୍ୟବାଦ ଜଣାଇ ସଭା ସାଙ୍ଗ ହେଲା ।

| ଗୋପାଳକୃଷ୍ଣ ଶ୍ରୀଚନ୍ଦନ | ବସନ୍ତ କୁମାର ପାଣିଗ୍ରାହୀ | ହରିଶ୍ଚନ୍ଦ୍ର ବକ୍ସିପାତ୍ର |
|---|---|---|
| ସଚିବ | ମହାସଚିବ | ସଭାପତି |

## ତା-୧୮-୧-୯୮ ରବିବାର ଅପରାହ୍ନ ୩ଟା ସମୟରେ ଅନୁଷ୍ଠିତ କାର୍ଯ୍ୟକାରୀ ସମିତି ବୈଠକ ବିବରଣୀ

ଉପସ୍ଥିତ ସଭ୍ୟ :

(୧) ବସନ୍ତ କୁମାର ପାଣିଗ୍ରାହୀ (୨) ହରିଶ୍ଚନ୍ଦ୍ର ବକ୍ସିପାତ୍ର (୩) ଡଃ ଅମରେନ୍ଦ୍ର କୁମାର ଦାସ (୪) ଡଃ ସୁରେନ୍ଦ୍ର ମୋହନ ପଣ୍ଡା (୫) ବଳରାମ ମହାନ୍ତି (୬) ବସନ୍ତ କୁମାର ତ୍ରିପାଠୀ (୭) ପଦ୍ମଚରଣ ନାୟକ (୮) ଶ୍ରୀଚରଣ ସ୍ୱାଇଁ (୯) ଅନ୍ନପୂର୍ଣ୍ଣ ମିଶ୍ର (୧୦) ବିଶ୍ୱନାଥ

ନାୟକ (୧୧) ଗୋପାଳକୃଷ୍ଣ ଶ୍ରୀଚନ୍ଦନ (୧୨) କାନନବାଳା ମହାନ୍ତି (୧୩) ଶ୍ରୀବତ୍ସ ଲାଞ୍ଛନ ପାଢ଼ୀ ।

ଉପସଭାପତି ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ସଭାପତିତ୍ୱରେ ବୈଠକ ଅନୁଷ୍ଠିତ ହୋଇ ଗତ ୭-୧୨-୯୭ ବୈଠକ ବିବରଣୀ ପାଠ କରାଯାଇ ଠିକ୍ ଥିବାରୁ ଦୃଢ଼ୀକୃତ ହେଲା । ଗୃହୀତ ପ୍ରସ୍ତାବଗୁଡ଼ିକ ଉପରେ ହୋଇଥିବା କାର୍ଯ୍ୟାନୁଷ୍ଠାନ ସମ୍ପର୍କରେ ସମୀକ୍ଷା କରାଯାଇଥିଲା ।

୧. ଆଜୀବନ ସଭ୍ୟମାନଙ୍କର ଚୂଡାନ୍ତ ତାଲିକା ପ୍ରସ୍ତୁତି ପାଇଁ ମୁଣ୍ଡା ରସିଦ୍ ବହି ସହ ସଭ୍ୟ ତାଲିକା ଫେବୃୟାରୀ ୨୮ ମଧ୍ୟରେ ପଠାଇବାକୁ ଚାନ୍ଦା ଆଦାୟକାରୀମାନଙ୍କୁ ଚିଠି ଲେଖିବାକୁ ସ୍ଥିର ହେଲା । ସମସ୍ତ ସଭ୍ୟଙ୍କର ନାମ ଓ ଠିକଣା ମିଳିଗଲେ ଅପ୍ରେଲ୍ ମାସରେ ସଭ୍ୟ ତାଲିକା ପ୍ରକାଶ ପାଇବ ।

୨. ଆଜୀବନ ସଭ୍ୟ ହେବା ପୂର୍ବରୁ ଏକ ଆବେଦନ ପତ୍ରରେ ସଂପୃକ୍ତ ବ୍ୟକ୍ତି ଆବେଦନ କରିବେ । ଏହି ଆବେଦନ ଫର୍ମ ଛପା ହେବା ପାଇଁ ସ୍ଥିର ହେଲା ।

୩.କ) କାର୍ଯ୍ୟାଳୟ ପରିଚାଳନା ସମ୍ପର୍କରେ ଆଲୋଚନା ହୋଇ ସ୍ଥିର ହେଲା, ଶ୍ରୀ ଶ୍ରୀବତ୍ସ ଲାଞ୍ଛନ ପାଢ଼ୀ, ଆଜୀବନ ସଭ୍ୟ ଅନ୍ୟ ବ୍ୟବସ୍ଥା ପର୍ଯ୍ୟନ୍ତ କାର୍ଯ୍ୟାଳୟ ଗୃହରେ ପ୍ରତ୍ୟେକ ଦିନ ରକ୍ଷଣାବେକ୍ଷଣ (କେୟାରଟେକର ଭାବରେ) ଦାୟିତ୍ୱ ତୁଲାଇବେ । ସେ କାର୍ଯ୍ୟାଳୟ ଗୃହରେ ଏକାକୀ ଅବସ୍ଥାନ କରି ଏହାର ନିରାପତ୍ତା ପ୍ରତି ଦୃଷ୍ଟି ଦେବେ । କୌଣସି ବାହାର ଲୋକଙ୍କୁ ରଖିବେ ନାହିଁ ଏବଂ କାର୍ଯ୍ୟାଳୟର ମର୍ଯ୍ୟାଦା ଓ ପବିତ୍ରତା ରକ୍ଷା ଦିଗରେ ଧ୍ୟାନ ଦେବେ । ଏହି କାର୍ଯ୍ୟ 'ଅନରାରି' ଭାବେ କରିବାକୁ ଶ୍ରୀ ପାଢ଼ୀ ସମ୍ମତି ଦେଲେ ।

ଖ) ଅନ୍ୟ ବ୍ୟବସ୍ଥା ପର୍ଯ୍ୟନ୍ତ ଶ୍ରୀ କେ.ସି. ସାମଲ୍, ବର୍ତ୍ତମାନ ଅବସ୍ଥାନ - ଏନ୍/୩, ନୂଆପଲ୍ଲୀ, ଭୁବନେଶ୍ୱର-୧୫ ଛୁଟି ଦିନ ମାନଙ୍କରେ ଏବଂ ସନ୍ଧ୍ୟା ମସୟରେ କାର୍ଯ୍ୟାଳୟ ପରିଚାଳନାରେ ସଚିବଙ୍କୁ ସାହାଯ୍ୟ କରିବା ପାଇଁ ଏବଂ ତାଙ୍କ ନିର୍ଦ୍ଦେଶରେ କାର୍ଯ୍ୟ କରିବାକୁ 'ସାମୟିକ ସହକାରୀ' ରୂପେ ଦାୟିତ୍ୱ ତୁଲାଇବା ନିମନ୍ତେ ସ୍ଥିର ହେଲା । ତାଙ୍କର ପାରିଶ୍ରମିକ ବାବଦକୁ ମାସିକ ତିନି ଶହ ଟଙ୍କା ଅନରାରିଅମ୍ ଦେବା ପାଇଁ ନିଷ୍ପତ୍ତି ନିଆଗଲା ।

୪. ଆଗାମୀ ସାଧାରଣ ପରିଷଦ ଗଠନ ନିମନ୍ତେ ଅବିଭକ୍ତ ୧୩ ଜିଲ୍ଲାରୁ ୧୦ ଜଣ କରି ସଭ୍ୟ ନିର୍ବାଚନ/ ମନୋନୟନ ପାଇଁ ପଦକ୍ଷେପ ନେବାକୁ ସ୍ଥିର ହେଲା । ଅବିଭକ୍ତ ପୁରୀ ଜିଲ୍ଲା ଶାଖା ଗଠନ, ଭୁବନେଶ୍ୱର ଶାଖା ଗଠନ ଏବଂ ଅବିଭକ୍ତ ପୁରୀ ଜିଲ୍ଲାରୁ ୧୦ ଜଣ ସଭ୍ୟ ନିର୍ବାଚନ ପାଇଁ ଏକ ବୈଠକ ଫେବୃୟାରୀ ୧୫ ତାରିଖ ମଧ୍ୟରେ

ଭୁବନେଶ୍ୱର କାର୍ଯ୍ୟାଳୟଠାରେ ସଚିବ ଶ୍ରୀଚନ୍ଦନଙ୍କ ଦ୍ୱାରା ଆହୂତ ହେବା ପାଇଁ ନିଷ୍ପତ୍ତି ନିଆଗଲା ।

୫. ପୂର୍ବ ନିର୍ଦ୍ଧାରିତ ଝାରସୁଗୁଡା ବାର୍ଷିକ ଅଧିବେଶନର ଆୟୋଜନ ଅନିଶ୍ଚିତ ବୋଲି ଅନୁଭୂତ ହେବାରୁ ଅନୁଗୋଳ କିମ୍ବା ତାଳଚେରଠାରେ ବାର୍ଷିକ ଅଧିବେଶନ କରାଇବା ପାଇଁ ପ୍ରାରମ୍ଭିକ ଯୋଗାଯୋଗ ଓ ବ୍ୟବସ୍ଥା ନିମନ୍ତେ କାର୍ଯ୍ୟକାରୀ ସମିତି ସଭ୍ୟ ଶ୍ରୀ ବସନ୍ତ କୁମାର ତ୍ରିପାଠୀଙ୍କୁ ଦାୟିତ୍ୱ ଦିଆଗଲା । ଶ୍ରୀ ତ୍ରିପାଠୀ କ୍ଷେତ୍ର ଅନୁଧ୍ୟାନ କରି ଜଣାଇବା ପରେ ଶେଷ ନିଷ୍ପତ୍ତି ନେବା ପାଇଁ ସ୍ଥିର ହେଲା ।

୬. ଗତ ତ୍ରିଦିବସୀୟ ସ୍ୱତନ୍ତ୍ର (ବିଧାନ ସଭା) ଅଧିବେଶନରେ ଇଂରାଜୀରେ ଆଲୋଚନା କରିଥିବା ବିଧାନ ସଭା ସଭ୍ୟ ସର୍ବଶ୍ରୀ ନରସିଂହ ମିଶ୍ର, ଅଶୋକ ଦାସ ଏବଂ ରଣେନ୍ଦ୍ର ପ୍ରତାପ ସ୍ୱାଇଁଙ୍କ ଏ ସମ୍ପର୍କରେ ସଦୟ ଦୃଷ୍ଟି ଆକର୍ଷଣ କରି ପତ୍ର ଲେଖାଯିବା ନିମନ୍ତେ ସ୍ଥିର ହେଲା ।

୭. 'ଉତ୍କଳ ସମ୍ମିଳନୀ ସମାଚାର'ର ତୃତୀୟ ସଂଖ୍ୟା ଚଳିତ ମାସ ଶେଷ ସୁଦ୍ଧା ପ୍ରକାଶ ପାଇବ ଏବଂ ଏହା ବ୍ୟାସକବି ଫକୀର ମୋହନ୍‌ଙ୍କ ସ୍ମୃତିପ୍ରତି ଉତ୍ସର୍ଗୀକୃତ ହେବ ବୋଲି ସ୍ଥିର ହେଲା । ମହାସଚିବ ଶ୍ରୀ ପାଣିଗ୍ରାହୀ ଏହାକୁ ନିଜ ଦାୟିତ୍ୱରେ ବ୍ରହ୍ମପୁରଠାରେ ସମ୍ପାଦନା ପୂର୍ବକ ମୁଦ୍ରଣ କରିବେ ବୋଲି ନିଷ୍ପତ୍ତି ନିଆଗଲା । ଆଗାମୀ ଲୋକସଭା ନିର୍ବାଚନକୁ ଆଖି ଆଗରେ ରଖି ରାଜ୍ୟ ବାହାର ବ୍ୟକ୍ତିଙ୍କୁ ପ୍ରାର୍ଥୀ ନ କରିବା, ରାଜ୍ୟ ଭିତରେ ଏବଂ ରାଜ୍ୟ ବାହାରେ ଓଡିଆ ଭାଷାଭାଷୀ ଅଧୁଷିତ ବିଚ୍ଛିନ୍ନାଞ୍ଚଳ ତଥା ବୃହତ ନଗରୀମାନଙ୍କରେ ଓଡିଆ ଭାଷା ସଂସ୍କୃତି ତଥା ଓଡିଆଙ୍କ ସ୍ୱାର୍ଥ ସୁରକ୍ଷା ପାଇଁ ସାଂସଦମାନଙ୍କର ପ୍ରତିଶ୍ରୁତିବଦ୍ଧତା ଉପରେ ମୁଖ୍ୟତଃ ଆଲୋଚନା ଓ ଦିଗ୍‌ଦର୍ଶନ ପ୍ରକାଶ ପାଇବ ବୋଲି ସର୍ବସମ୍ମତ ମତ ପ୍ରକାଶ ପାଇଥିଲା ।

୮. ସଚିବ ଶ୍ରୀଚନ୍ଦନ ଗତ ତିନି ବର୍ଷର ଆୟ ବ୍ୟୟ ଫର୍ଦ୍ଦ ପ୍ରସ୍ତୁତି ଓ ଏହାର ସମୀକ୍ଷା ନିମନ୍ତେ ନେଇଥିବା ପଦକ୍ଷେପ ସମ୍ପର୍କରେ ସମ୍ୟକ୍ ସୂଚନା ଦେଇଥିଲେ । ସଭ୍ୟ ଶ୍ରୀ ବିଶ୍ୱନାଥ ନାୟକ ଏହି ଆୟ ବ୍ୟୟ ଫର୍ଦ୍ଦକୁ ଚାର୍ଟାଡ୍ ଆକାଉଣ୍ଟାଣ୍ଟଙ୍କ ଦ୍ୱାରା ସମୀକ୍ଷା କରାଇବା ପାଇଁ ବ୍ୟବସ୍ଥା କରିବାକୁ ଦାୟିତ୍ୱ ନେବେ ବୋଲି ଇଚ୍ଛାପ୍ରକାଶ କରିଥିଲେ । ଏହା ଗୃହୀତ ହୋଇଥିଲା ।

୯. କଟକରୁ ପଲାସା ମଧ୍ୟରେ ଚଳାଚଳ କରୁଥିବା ଡି.ଏମ୍.ୟୁ. ରେଳଗାଡି 'ଉତ୍କଳ ସମ୍ମିଳନୀ' ନାମରେ ନାମିତ ହୋଇଥିଲା ଏବଂ କେତେ ଦିନ ଚଳିବା ପରେ ଏହି ନାମକରଣ ଉଠାଇ ଦିଆଯାଇଛି । ଏ ସମ୍ପର୍କରେ ଆଲୋଚନା କରିବା ପାଇଁ ଏକ ପ୍ରତିନିଧି ମଣ୍ଡଳୀ ଆଗାମୀ ଫେବୃୟାରୀ ପ୍ରଥମ ସପ୍ତାହରେ 'ଫେବୃୟାରୀ ୨ ତାରିଖ

ଆପାତତଃ) ସଂପୃକ୍ତ ରେଳବାଇ କର୍ତ୍ତୃପକ୍ଷଙ୍କୁ ଭେଟିବାକୁ ସ୍ଥିର ହେଲା । ଉପସଭାପତି ଓ ମହାସଚିବଙ୍କ ନେତୃତ୍ୱରେ ଅଧିକ ସଂଖ୍ୟକ ପ୍ରତିନିଧି ସାକ୍ଷାତ ପାଇଁ ଯିବା ନିମନ୍ତେ ସର୍ବସମ୍ମତ ମତ ପ୍ରକାଶ ପାଇଥିଲା ।

୧୦. ୧୮-୧-୯୮ ଦୈନିକ 'ସମାଜ'ରେ ପ୍ରକାଶିତ ସମ୍ବାଦ ''ସମସ୍ତ ସରକାରୀ ଦପ୍ତରରେ ଓଡ଼ିଆ ଭାଷାକୁ ପ୍ରାଧାନ୍ୟ ଦେବାକୁ ବିଜ୍ଞପ୍ତି ଜାରୀ'' ପାଇଁ ରାଜ୍ୟ ସରକାରଙ୍କୁ ଧନ୍ୟବାଦ ଜଣାଇ ପତ୍ର ଦେବାକୁ ସ୍ଥିର ହେଲା । ସଚିବାଳୟର ଅନ୍ୟ ମନ୍ତ୍ରୀ ଓ ସଚିବମାନେ ଏହି ବିଜ୍ଞପ୍ତିକୁ କାର୍ଯ୍ୟକାରୀ କରିବା ଲାଗି ବିଶେଷ ଧ୍ୟାନଦେବା ପାଇଁ ଅନୁରୋଧ କରାଗଲା ।

ପରିଶେଷରେ ସଭାପତିଙ୍କୁ ଧନ୍ୟବାଦ ସହ ସଭା ସାଙ୍ଗ ହେଲା ।

| | | |
|---|---|---|
| ଗୋପାଳକୃଷ୍ଣ ଶ୍ରୀଚନ୍ଦନ | ବସନ୍ତ କୁମାର ପାଣିଗ୍ରାହୀ | ହରିଶ୍ଚନ୍ଦ୍ର ବକ୍ସିପାତ୍ର |
| ସଚିବ | ମହାସଚିବ | ସଭାପତି |

## ତା-୧୫-୩-୯୮ ରବିବାର ଅପରାହ୍ନ ୩ ଘଣ୍ଟା ସମୟରେ ଅବିଭକ୍ତ ପୁରୀ ଜିଲ୍ଲା ଏବଂ ୪ ଘଣ୍ଟା ସମୟରେ ଭୁବନେଶ୍ୱର ଶାଖା ବୈଠକ ବିବରଣୀ । ସ୍ଥାନ - ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟ, ଭୁବନେଶ୍ୱର୍

ବୈଠକ ପ୍ରାରମ୍ଭରେ ଆହୂତ ସଭାର ଉଦ୍ଦେଶ୍ୟ ସମ୍ପର୍କରେ ସୂଚନା ଦେଇ ସଚିବ ଶ୍ରୀଚନ୍ଦନ ଉପସ୍ଥିତ ସଭ୍ୟ ସଭ୍ୟାମାନଙ୍କୁ ସ୍ୱାଗତ ଜଣାଇବା ପରେ ସମ୍ମିଳନୀର ଉପସଭାପତି ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ସଭାପତିତ୍ୱରେ ବୈଠକ ଅନୁଷ୍ଠିତ ହୋଇଥିଲା ।

ଆଜି ପୂର୍ବାହ୍ନରେ ଓଡ଼ିଶାର ବୟୋଜ୍ୟେଷ୍ଠା ନାରୀନେତ୍ର ଓ ସ୍ୱାଧୀନତା ସଂଗ୍ରାମୀ ଶ୍ରୀମତୀ ମାଳତୀ ଚୌଧୁରୀଙ୍କର ବିୟୋଗ ଘଟିଥିବାରୁ ସଭାପତିଙ୍କ ଆହ୍ୱାନ କ୍ରମେ ଏକ ଶୋକ ପ୍ରସ୍ତାବ ଗୃହୀତ ହେବା ସହ ସ୍ୱର୍ଗତ ଆତ୍ମାର ସଦ୍‌ଗତି ପାଇଁ ଦୁଇ ମିନିଟ୍ ନୀରବ ପ୍ରାର୍ଥନା କରାଯାଇଥିଲା ।

<u>ଶୋକ ପ୍ରସ୍ତାବ</u> : ''ଓଡ଼ିଶାର ବୟୋଜ୍ୟେଷ୍ଠା ନାରୀନେତ୍ରୀ, ବିପ୍ଳବିନୀ, ସମାଜସେବିକା ଓ ସ୍ୱାଧୀନତା ସଂଗ୍ରାମୀ ଶ୍ରୀମତୀ ମାଳତୀ ଦେବୀ ଚୌଧୁରୀଙ୍କ ବିୟୋଗ ଓଡ଼ିଶାବାସୀଙ୍କ ପକ୍ଷେ ଏକ ଅପୂରଣୀୟ କ୍ଷତି । ତାଙ୍କ ବିୟୋଗରେ ମୁକ୍ତି ସଂଗ୍ରାମର ଏକ ଯୁଗର ଅବସାନ ଘଟିଲା । ଉତ୍କଳ ସମ୍ମିଳନୀ ଦିବଂଗତ ନେତ୍ରୀଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ସମ୍ମାନ ଜଣାଇବା ସଙ୍ଗେ ସଙ୍ଗେ ତାଙ୍କ ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରୁଛନ୍ତି ।''

ଉତ୍କଳ ସମ୍ମିଳନୀ ସଭାପତି ଡ: ରାଧାନାଥ ରଥଙ୍କ ବିୟୋଗ ପରେ ଏହା ଅବିଭକ୍ତ ପୁରୀ ଜିଲ୍ଲା ତଥା ଭୁବନେଶ୍ୱର ଶାଖାର ପ୍ରଥମ ବୈଠକ ବସୁଥିବାରୁ ଦିବଂଗତ ଆତ୍ମାପ୍ରତି ଶ୍ରଦ୍ଧା ଓ ସମ୍ମାନ ଜଣାଇବା ସଙ୍ଗେ ସଙ୍ଗେ (ତାଙ୍କ ଆତ୍ମାର) ସଦ୍‌ଗତି ପାଇଁ ଦୁଇ ମିନିଟ୍ ନୀରବ ପ୍ରାର୍ଥନା କରାଯାଇଥିଲା ।

(କ) ଜିଲ୍ଲା ଶାଖା ଗଠନ ଓ ସାଧାରଣ ପରିଷଦକୁ ସଭ୍ୟ ନିର୍ବାଚନ ସମ୍ପର୍କରେ ଆଲୋଚନା କରାଯାଇ ଆଜିର ବୈଠକ ପାଇଁ ସଭ୍ୟମାନଙ୍କ ନିକଟକୁ ପ୍ରେରିତ ନୋଟିସ୍ ଅନୁଯାୟୀ ଅବିଭକ୍ତ ପୁରୀ ଜିଲ୍ଲାରୁ ଦଶଜଣ ସଭ୍ୟ ନିର୍ବାଚିତ ହେବା କାର୍ଯ୍ୟକ୍ରମ ଆରମ୍ଭ ହେଲା ।

ସଭାପତିଙ୍କ ଆହ୍ୱାନକ୍ରମେ ପ୍ରସ୍ତାବମାନ ଆଗତ ହୋଇ ନିମ୍ନଲିଖିତ ଦଶ ଜଣ ସଭ୍ୟ ସାଧାରଣ ପରିଷଦକୁ ସର୍ବସମ୍ମତି କ୍ରମେ ନିର୍ବାଚିତ ହେଲେ ।

(୧) ଶ୍ରୀ ବିଶ୍ୱନାଥ ସାମନ୍ତ (୨) ଶ୍ରୀ ବିଚିତ୍ର କୁମାର ବଡଜେନା (୩) ଶ୍ରମତୀ ମଞ୍ଜୁ ମହାନ୍ତି (୪) ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର (୫) ଶ୍ରୀ ଅନାମ ଚନ୍ଦ୍ର ସାହୁ (୬) ଶ୍ରୀ ସୁରେନ୍ଦ୍ର ମୋହନ ପଣ୍ଡା (୭) ଡାକ୍ତର ରାଧାନାଥ ପ୍ରହରାଜ (୮) ଶ୍ରୀ ଗଙ୍ଗାଧର ପାଣିଗ୍ରାହୀ (୯) ଶ୍ରୀ କୈଳାସ ଆଚାର୍ଯ୍ୟ (୧୦) ଶ୍ରୀମତୀ ଉଷାରାଣୀ ମହାନ୍ତି ।

(ଖ) ଭୁବନେଶ୍ୱର ଶାଖା ନିମନ୍ତେ ନିମ୍ନ ପ୍ରକାରେ ସର୍ବସମ୍ମତି କ୍ରମେ କାର୍ଯ୍ୟକାରୀ ସମିତି ଗଠନ କରାଯାଇଥିଲା ।

ସଭାପତି - ଶ୍ରୀ ବଳରାମ ମହାନ୍ତି, ଉପସଭାପତି - ଶ୍ରୀ ସୁରେନ୍ଦ୍ର ମୋହନ ପଣ୍ଡା, ସମ୍ପାଦକ - ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର, ସହସମ୍ପାଦକ - ଡାକ୍ତର ରାଧାନାଥ ପ୍ରହରାଜ, ସଭ୍ୟ -୧. ଶ୍ରୀ ଭବାନୀ ପ୍ରସାଦ ମହାପାତ୍ର, ୨. ଶ୍ରୀ ଶୁଭେନ୍ଦୁ ରାଉତରାୟ, ୩. ଶ୍ରୀମତୀ କାନନବାଳା ମହାନ୍ତି, ୪. ଶ୍ରୀ ଦୟାନିଧି ପଟ୍ଟନାୟକ, ୫. ଶ୍ରୀ ହରେକୃଷ୍ଣ ଧୂପାଳ ଶର୍ମା, ୬. ଶ୍ରୀ ସତ୍ୟ ଭୂଷଣ ଦାଶ, ୭. ଶ୍ରୀ ଜାନକୀବଲ୍ଲଭ ପାଣିଗ୍ରାହୀ, ୮. ଶ୍ରୀ ଗୌରାଙ୍ଗ ହୋତା, ୯. ଶ୍ରୀ ଉପେନ୍ଦ୍ର ନାଥ ହୋତା, ୧୦. ଶ୍ରୀ ସୁରେଶ ବାରିକ, ୧୧. ଶ୍ରୀ ଶଶାଙ୍କ ଶେଖର ମହାନ୍ତି, ୧୨. ଶ୍ରୀ ପଦ୍ମଚରଣ ନାୟକ ।

ନିର୍ବାଚିତ ସଭ୍ୟସଭ୍ୟାମାନଙ୍କୁ କରତାଳି ଦ୍ୱାରା ଅଭିନନ୍ଦନ ଜ୍ଞାପନ କରାଗଲା ।

ଉପସ୍ଥିତ ସଭ୍ୟ ସର୍ବଶ୍ରୀ ବିଶ୍ୱନାଥ ସାମନ୍ତ, ଶ୍ରୀମତୀ ମଞ୍ଜୁ ମହାନ୍ତି, ହରିବନ୍ଧୁ ଦାସ, ନରସିଂହ ନନ୍ଦ, ବଳରାମ ମହାନ୍ତି ପ୍ରମୁଖ ସମ୍ମିଳନୀର ବିଭିନ୍ନ କାର୍ଯ୍ୟକ୍ରମ, ଗତ ଭାଷା ବର୍ଷ ପାଳନ, ଜନ ସହଯୋଗ ଓ ଗଣମାଧ୍ୟମଗୁଡ଼ିକର ସଂପୃକ୍ତି ସମ୍ପର୍କରେ ଆଲୋଚନା କରିଥିଲେ ।

ସଭାପତି ଶ୍ରୀଯୁକ୍ତ ବକ୍ସିପାତ୍ର ସମ୍ମିଳନୀର ବିଭିନ୍ନ କାର୍ଯ୍ୟକ୍ରମ ଓ ଭୂମିକା ଉପରେ ସିଂହାବଲୋକନ ପୂର୍ବକ ଆଗାମୀ କାର୍ଯ୍ୟକ୍ରମ ସମ୍ପର୍କରେ ସୂଚନା ଦେଇ ଅପ୍ରେଲ୍ ପହିଲାଦିନ

'ଉତ୍କଳ ଦିବସ' ସର୍ବତ୍ର ନିଷ୍ଠା ସହକାରେ ପାଳନ ପାଇଁ ଆହ୍ୱାନ୍ ଦେଇଥିଲେ ।

ପୁରୀ ଶାଖା ତରଫରୁ ଓଡିଆ ଭାଷା ବ୍ୟବହାର ସମ୍ପର୍କରେ ମୁଦ୍ରିତ 'ନିବେଦନ ପତ୍ର' ପାଠକରି ଉପସ୍ଥିତ ସଭ୍ୟମାନଙ୍କୁ ଶୁଣାଇ ଦିଆ ଯାଇଥିଲା ଏବଂ ଏହା ପାଳନ କରିବାକୁ ସମସ୍ତ ସଭ୍ୟ ଯତ୍ନବାନ ହେବା ସହ ଅନ୍ୟମାନଙ୍କୁ ପାଳନ କରିବା ପାଇଁ ପ୍ରବର୍ତ୍ତନା ଦେବା ନିମନ୍ତେ ଅନୁରୋଧ କରାଗଲା ।

ଶେଷରେ ସଭାପତି ଓ ଉପସ୍ଥିତ ସଭ୍ୟମାନଙ୍କୁ ଧନ୍ୟବାଦ ଜ୍ଞାପନ କରାଯାଇ ସଭା ସାଙ୍ଗ ହେଲା ।

ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ସଚିବ — ହରିଶ୍ଚନ୍ଦ୍ର ବକ୍ସିପାତ୍ର, ସଭାପତି

## ତା-୫-୪-୯୮ ରବିବାର ପୂର୍ବାହ୍ନ ୧୦ ଟା ସମୟରେ ଅନୁଷ୍ଠିତ କାର୍ଯ୍ୟକାରୀ ସମିତି ବୈଠକ ବିବରଣୀ

ଉପସ୍ଥିତ ସଭ୍ୟ :

(୧) ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଉପସଭାପତି (୨) ବସନ୍ତ କୁମାର ପାଣିଗ୍ରାହୀ (୩) ଗୋପାଳକୃଷ୍ଣ ଶ୍ରୀଚନ୍ଦନ (୪) ସୁରେନ୍ଦ୍ର ମୋହନ ପଣ୍ଡା (୫) ବଳରାମ ମହାନ୍ତି (୬) ବସନ୍ତ କୁମାର ତ୍ରିପାଠୀ (୭) ପଦ୍ମଚରଣ ନାୟକ (୮) ଆଚାର୍ଯ୍ୟ ଭାବାନନ୍ଦ (୯) ଅନ୍ନପୂର୍ଣ୍ଣା ମିଶ୍ର (୧୦) ବ୍ରାହ୍ମୀପ୍ରିୟା ସାମନ୍ତରାୟ (୧୧) କାନନବାଳା ମହାନ୍ତି (୧୨) ବିପିନ ବିହାରୀ ରଥ (୧୩) ଶ୍ରୀଚରଣ ସ୍ୱାଇଁ (୧୪) ହରିହର ବାହିନୀପତି (୧୫) ବିଶ୍ୱନାଥ ନାୟକ ।

ଉପସଭାପତି ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ସଭାପତିତ୍ୱରେ ବୈଠକ ବସିଥିଲା ।

### ଶୋକ ପ୍ରସ୍ତାବ

ଗତ କାର୍ଯ୍ୟକାରୀ ସମିତି ବୈଠକ ପରେ ଦିବଂଗତ ଉତ୍କଳ ସମ୍ମିଳନୀ ସଭାପତି ଡକ୍ଟର ରାଧାନାଥ ରଥ, ନାରୀନେତ୍ରୀ ତଥା ସ୍ୱାଧୀନତା ସଂଗ୍ରାମୀ ମାଳତୀ ଦେବୀ ଚୌଧୁରୀ ଜଷ୍ଟିସ୍ ଯୁଗଳ କିଶୋର ମହାନ୍ତି, ଅଧ୍ୟାପକ ପ୍ରାଣବନ୍ଧୁ କର ଏବଂ ପଣ୍ଡିତ ରଘୁନାଥ ମିଶ୍ରଙ୍କ ଉଦ୍ଦେଶ୍ୟରେ ଗଭୀର ଶ୍ରଦ୍ଧା ଓ ସମ୍ମାନ ଜଣାଇବା ସଙ୍ଗେ ସଙ୍ଗେ ସ୍ୱର୍ଗତ ଆତ୍ମାର ସଦ୍‌ଗତି ପାଇଁ ଦୁଇ ମିନିଟ୍ ନୀରବ ପ୍ରାର୍ଥନା କରାଯାଇଥିଲା ।

ଗତ ୧୮-୧-୯୮ କାର୍ଯ୍ୟକାରୀ ସମିତି ବୈଠକ ବିବରଣୀ ପାଠ କରାଯାଇ ଠିକ୍ ଥିବାରୁ ଦୃଢ଼ୀକୃତ କରାଯାଇଥିଲା । ଏବଂ ଗୃହୀତ ପ୍ରସ୍ତାବଗୁଡିକର କାର୍ଯ୍ୟକାରିତା ଉପରେ ସମୀକ୍ଷା କରାଯାଇଥିଲା ।

ବାର୍ଷିକ ଅଧିବେଶନ ସମ୍ପର୍କରେ ଶ୍ରୀ ବସନ୍ତ କୁମାର ତ୍ରିପାଠୀ, ସଭ୍ୟ ନେଇଥିବା

ପଦକ୍ଷେପର ସୂଚନା ଦେଇଥିଲେ । ଆଜୀବନ ସଭ୍ୟ ତାଲିକାର ଜିଲ୍ଲାବାରି ପ୍ରସ୍ତୁତି ଏବଂ ଗତ ତିନି ବର୍ଷର ଆୟ ବ୍ୟୟ ଫର୍ଦ୍ଦ ପ୍ରସ୍ତୁତି ତଥା ସମୀକ୍ଷକଙ୍କ ଦ୍ୱାରା ଚାଲିଥିବା ସମୀକ୍ଷାର ଅଗ୍ରଗତି ସମ୍ପର୍କରେ ଆଲୋଚନା କରାଯାଇଥିଲା । କଟକ-ପଲାସା ଡି.ଏମ୍.ୟୁ. ରେଳଗାଡ଼ିର ଉତ୍କଳ ସମ୍ମିଳନୀ (ମଧୁସୂଦନ ଓ ଶଶୀଭୂଷଣଙ୍କ) ନାମରେ ପୁନଃନାମକରଣ ପାଇଁ ରେଳ କର୍ତ୍ତୃପକ୍ଷଙ୍କ ସହ ଉଦ୍ୟମ ଜାରି ରଖିବାକୁ ଠିକ୍ ହେଲା ।

ପ୍ରସ୍ତାବ : ସାଧାରଣ ଅଧିବେଶନ :

ଆଗାମୀ ସେପ୍ଟେମ୍ବର ୧୨ ଓ ୧୩ ଦୁଇଦିନ ତାଳଚେରଠାରେ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେବ ବୋଲି ଆପାତତଃ ସ୍ଥିର ହେଲା । ସଭ୍ୟ ଶ୍ରୀ ବସନ୍ତ କୁମାର ତ୍ରିପାଠୀ ଅଧିବେଶନ ପାଇଁ ତାଳଚେରଠାରେ ଯୋଗାଯୋଗ କରି ପ୍ରାକ୍ ପ୍ରସ୍ତୁତି ପୂର୍ବକ କେନ୍ଦ୍ର କାର୍ଯ୍ୟାଳୟକୁ ଜଣାଇବେ ।

ପ୍ରସ୍ତାବ : ରାଜ୍ୟ ପରିଷଦ ଗଠନ :

ଏକ ମାସ ବା ଚାରି ସପ୍ତାହ ପୂର୍ବରୁ ଜଣେ ସଭ୍ୟ ହୋଇଥିଲେ ପରିଷଦ ନିର୍ବାଚନରେ ଅଂଶ ଗ୍ରହଣ କରି ପାରିବେ ବୋଲି ନିଷ୍ପତ୍ତି ନିଆଗଲା । ବିଭିନ୍ନ ଜିଲ୍ଲାରୁ ସଭ୍ୟ ସଂଗ୍ରହ ଓ ପରିଷଦକୁ ସଭ୍ୟ ନିର୍ବାଚିତ ହୋଇ ଆସିବା ପାଇଁ ନିମ୍ନଲିଖିତ ଭାବେ ସଭ୍ୟମାନଙ୍କୁ ଦାୟିତ୍ୱ ଦିଆଗଲା । ଏହା ସହିତ ଜିଲ୍ଲା ଶାଖା ଗଠନ ବ୍ୟବସ୍ଥା କରିବେ ବୋଲି ସ୍ଥିର ହେଲା ।

(୧) ଅଧ୍ୟାପକ କ୍ଷେତ୍ରମୋହନ ଶତପଥୀ ଓ ଡାକ୍ତର ଗୁରୁପ୍ରସାଦ ମହାନ୍ତି - କଟକ, ଯାଜପୁର ଓ ଜଗତସିଂହପୁର ଜିଲ୍ଲା (୨) ଶ୍ରୀ ପଦ୍ମଚରଣ ନାୟକ ଓ ଶ୍ରୀ ଶ୍ରୀଚରଣ ସ୍ୱାଇଁ - କେନ୍ଦ୍ରାପଡା ଜିଲ୍ଲା (୩) ଶ୍ରୀ ବିଶ୍ୱନାଥ ନାୟକ -ଭଦ୍ରକ ଜିଲ୍ଲା (୪) ଶ୍ରୀ ସୁରେନ୍ଦ୍ର ମୋହନ ପଣ୍ଡା - ଦେବଗଡ, ସୋନପୁର ଓ ମୟୁରଭଞ୍ଜ ଜିଲ୍ଲା (୫) ଡାକ୍ତର ଗୁରୁପ୍ରସାଦ ମହାନ୍ତି - ଝାର୍‌ସୁଗୁଡା ଜିଲ୍ଲା (୬) ଶ୍ରୀ ଭାଗୀରଥି ମହାନ୍ତ, ଏଡ୍‌ଭୋକେଟ୍ - କେନ୍ଦୁଝର (୭) ଇଂ ଶ୍ରୀ ଅମରେନ୍ଦ୍ର କୁମାର ଦାସ - ବାଲେଶ୍ୱର (୮) ଶ୍ରୀ ବସନ୍ତ କୁମାର ତ୍ରିପାଠୀ - ଢେଙ୍କାନାଳ (୯) ଶ୍ରୀ ମୀନକେତନ ପୁରୋହିତ - ଅନୁଗୋଳ (୧୦) ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର - ଅବିଭକ୍ତ କୋରାପୁଟ ଜିଲ୍ଲା - କୋରାପୁଟ, ରାୟଗଡା, ମାଲକାନାଗିରି ଓ ନବରଙ୍ଗପୁର; ଗଜପତି ଜିଲ୍ଲା - ଶ୍ରୀ କାଳିଆ ପାଣିଗ୍ରାହୀ, କାଶିନଗରଙ୍କୁ ମଧ୍ୟ ଗଜପତି ଜିଲ୍ଲାରେ ସଭ୍ୟ ସଂଗ୍ରହ ଓ ପରିଷଦ ନିର୍ବାଚନ ସମ୍ପର୍କରେ ସଂପୃକ୍ତ କରାଯିବ (୧୧) ଶ୍ରୀ ପଦ୍ମଲୋଚନ ପଣ୍ଡା, ଆଡ୍‌ଭୋକେଟ୍ ଓ ଶ୍ରୀ ଗୋପାଳ ମିଶ୍ର, ଆଡ୍‌ଭୋକେଟ୍ - ବରଗଡ ଜିଲ୍ଲା (୧୨) ଡକ୍ଟର ପ୍ରଫୁଲ୍ଲ କୁମାର ପତି, ଶ୍ରୀ ପରେଶ ଦାନୀ, ଓ ଶ୍ରୀ ପତିତପାବନ ପ୍ରଧାନ - ସମ୍ବଲପୁର ଜିଲ୍ଲା (୧୩) ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ - ବଲାଙ୍ଗୀର, କନ୍ଧମାଳ ଓ ବୌଦ୍ଧ (୧୪) ଶ୍ରୀ ଦେବୀ ପ୍ରସାଦ ମିଶ୍ର, ପୂର୍ବତନ ମ୍ୟୁନିସିପାଲିଟି ଅଧକ୍ଷ - କଳାହାଣ୍ଡି (୧୫) ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ଓ

ଶ୍ରୀ ଜଗଦୀଶ ପ୍ରଧାନ (କୋମନା ସାହିତ୍ୟ ସଂସଦ ସହାୟତାରେ) - ନୂଆପଡା (୧୬) ଶ୍ରୀ ହରିହର ବାହିନୀପତି, ଶ୍ରୀ ଜାନକୀବଲ୍ଲଭ ପାଣିଗ୍ରାହୀ (ଶ୍ରୀ କିଶୋର ଶତପଥୀଙ୍କ ସହାୟତାରେ) - ନୟାଗଡ (୧୭) ଶ୍ରୀ କୈଳାସ ଆଚାର୍ଯ୍ୟ ଯେଉଁ ଜିଲ୍ଲାଗୁଡିକର ସଭ୍ୟ ସଂଗ୍ରହ ଦାୟିତ୍ୱ ନେଇଛନ୍ତି, ତାହା ସମ୍ପୂର୍ଣ୍ଣ କରିବାକୁ ଅନୁରୋଧ କରାଗଲା ।

୧୯୯୮ ମେ ୩୧ ମଧ୍ୟରେ ଏହି କାର୍ଯ୍ୟ ସମ୍ପୂର୍ଣ୍ଣ କରିବା ପାଇଁ ସମ୍ପୃକ୍ତ ସଭ୍ୟମାନଙ୍କୁ ଅନୁରୋଧ କରାଗଲା ।

**୩ୟ ପ୍ରସ୍ତାବ :**

ନୂତନ ସାଧାରଣ ପରିଷଦ ଗଠନ ଓ କାର୍ଯ୍ୟକାରୀ ସମିତି ତଥା କର୍ମକର୍ତ୍ତା ନିର୍ବାଚନ ପର୍ଯ୍ୟନ୍ତ ସଭ୍ୟ ଶ୍ରୀ ବିପିନ ବିହାରୀ ରଥଙ୍କ ପ୍ରସ୍ତାବ ଓ ଆଚାର୍ଯ୍ୟ ଭାବାନନ୍ଦଙ୍କ ସମର୍ଥନ କ୍ରମେ ଉପସଭାପତି ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର କାର୍ଯ୍ୟକାରୀ ସଭାପତି ଭାବେ ଦାୟିତ୍ୱ ତୁଲାଇବେ ବୋଲି ନିଷ୍ପତ୍ତି ନିଆଗଲା ।

**୪ର୍ଥ ପ୍ରସ୍ତାବ :**

ଅପ୍ରେଲ୍ ୧୪ ପଣା ସଂକ୍ରାନ୍ତି ଦିନ 'ଓଡିଆ ନବ ବର୍ଷ ଦିବସ' ଅଭିନନ୍ଦନ ପତ୍ର ପ୍ରଦାନ ତଥା ବନ୍ଧୁ ମିଳନ ମାଧ୍ୟମରେ ଓଡିଶାରେ ସର୍ବତ୍ର ଏବଂ ରାଜ୍ୟ ବାହାରେ ଯେଉଁଠାରେ ଓଡିଆମାନେ ବସବାସ କରୁଛନ୍ତି, ସେଠାରେ ପାଳନ କରିବା ପାଇଁ ସ୍ଥିର ହେଲା । ଓଡିଆ ନବ ବର୍ଷ କାଲେଣ୍ଡର, ଏହି ଅବସରରେ କରିବା ପାଇଁ ବିଚାର ହେଲା ।

ଅପ୍ରେଲ୍ ୨୬ ରେ ଗଜପତି କୃଷ୍ଣଚନ୍ଦ୍ର ଜୟନ୍ତୀ ରାଜ୍ୟର ସର୍ବତ୍ର ପାଳନ କରାଯିବ । ସମ୍ମିଳନୀ ଆନୁକୂଲ୍ୟରେ ମାଲକାନଗିରି ଓ ବୌଦ୍ଧରେ ଯଥାକ୍ରମେ ଶ୍ରୀ ବକ୍ସିପାତ୍ର ଓ ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀଙ୍କ ଉପସ୍ଥିତି ଓ ତତ୍ତ୍ୱାବଧାନରେ ପାଳନ କରାଯିବ ବୋଲି ସ୍ଥିର ହେଲା ।

**୫ମ ପ୍ରସ୍ତାବ :**

ରାଜଧାନୀ ଭୁବନେଶ୍ୱରରେ ଗଜପତି କୃଷ୍ଣଚନ୍ଦ୍ର ଏବଂ ମଧୁବାବୁଙ୍କର ପ୍ରତିମୂର୍ତ୍ତି ଯଥାକ୍ରମେ ସଚିବାଳୟ ଛକ ଏବଂ କଳ୍ପନା ଛକଠାରେ ସ୍ଥାପନ କରିବା ପାଇଁ ରାଜ୍ୟ ସରକାରଙ୍କଠାରେ ଦୃଢ଼ ଦାବୀ କରାଯାଇ ସର୍ବସମ୍ମତ ପ୍ରସ୍ତାବ ଗୃହୀତ ହେଲା ।

**୬ଷ୍ଠ ପ୍ରସ୍ତାବ :**

ଉତ୍କଳ ଗୌରବ ମଧୁସୂଦନ ଦାସଙ୍କର ଜନ୍ମ ୨୮-୪-୧୯୯୮ ରେ ଦେଢ଼ଶହ ବର୍ଷ ପୂର୍ତ୍ତି ହେବ । ବିଗତ ୧୯୪୮ ରେ ତାଙ୍କର ଜନ୍ମ ଶତବାର୍ଷିକୀ ଯଥାଯଥ ଭାବେ ପାଳିତ ହୋଇଥିବା ସମ୍ପର୍କରେ କୌଣସି ରେକର୍ଡ ନ ଥିବା ବିଷୟ ବୈଠକରେ ଉପସ୍ଥିତ ବୟୋଜ୍ୟେଷ୍ଠ ସଭ୍ୟ ତଥା ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ବଳରାମ ମହାନ୍ତି ପ୍ରକାଶ କରିଥିଲେ ।

ରାଜ୍ୟ ସରକାର ଏବଂ ରାଜ୍ୟବାସୀ ଉତ୍କଳ ଗୌରବଙ୍କର ସ୍ମୃତି ରକ୍ଷା ଏବଂ ସ୍ମୃତି ପୂଜା ପ୍ରତି ଯଥୋଚିତ ଧ୍ୟାନ ଦେଇ ଉଦ୍ୟମ କରି ନ ଥିବା ବୈଠକରେ ଅନୁଭୂତ ହୋଇଥିଲା । ଏ ଦୃଷ୍ଟିରୁ ମଧୁବାବୁଙ୍କର ଜନ୍ମ ଦେଢ଼ଶହ ବର୍ଷ ପୂର୍ତ୍ତିକୁ ଏକ ବର୍ଷବ୍ୟାପୀ ପାଳନ କରାଯିବା ପାଇଁ ନିଷ୍ପତ୍ତି ନିଆଗଲା । ଅପ୍ରେଲ୍ (୨୮) ୧୯୯୮ ରୁ ଅପେଲ୍ (୨୮) ୧୯୯୯ ପର୍ଯ୍ୟନ୍ତ ଏକ ବର୍ଷ ବ୍ୟାପୀ 'ମଧୁ ଜନ୍ମ ଦେଢ଼ଶହ ବାର୍ଷିକୀ' ପାଳନ ପାଇଁ ସରକାର ତଥା ରାଜ୍ୟବାସୀଙ୍କୁ ଆହ୍ୱାନ୍ ଦିଆଗଲା ।

୧ - ଏହି ଅବସରରେ ଓଡିଶା ବିଧାନ ସଭାର ଏକ 'ସ୍ୱତନ୍ତ୍ର ଏକ ଦିବସୀୟ ଅଧିବେଶନ' ଡାକିବା ପାଇଁ ମାନ୍ୟବର ବାଚସ୍ପତିଙ୍କୁ ଲେଖିବା ପାଇଁ ସ୍ଥିର ହେଲା ।

୨ - ରାଜଧାନୀ ଦିଲ୍ଲୀଠାରେ ଆଗାମୀ ମେ ମାସରେ ଏକ ସଭା କରାଯାଇ ମଧୁବାବୁଙ୍କର ବହୁମୁଖୀ ପ୍ରତିଭା ଉପରେ ଆଲୋଚନା କରାଯିବ ।

୩ - ଦିଲ୍ଲୀର ଏକ ରାସ୍ତାର ନାମ 'ମଧୁସୂଦନ ମାର୍ଗ' ରଖା ଯିବା ନିମନ୍ତେ ଅନୁରୋଧ କରାଯିବ ।

୪ - ବାରମାସିଆ କାର୍ଯ୍ୟକ୍ରମ କରାଯାଇ ବର୍ଷବ୍ୟାପୀ ପାଳନ ନିମନ୍ତେ ମୁଖ୍ୟମନ୍ତ୍ରୀ ଓ ସଂପୃକ୍ତ ମନ୍ତ୍ରୀମାନଙ୍କୁ ଅନୁରୋଧ କରାଯିବ ।

୫ - 'ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ଏବଂ ଓଡିଆ ଆନ୍ଦୋଳନର ଇତିହାସ' ପ୍ରଣୟନ କରିବା ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଅନୁରୋଧ କରାଯିବ ।

ଏତଦ୍ ବ୍ୟତୀତ 'ବିଧାୟକ ମଧୁସୂଦନ' ବିଷୟବସ୍ତୁ ଉପରେ ଏକ ସେମିନାର୍ କରିବା ପାଇଁ ମଧ୍ୟ କୁଳପତିଙ୍କୁ ଅନୁରୋଧ କରାଯିବ ।

୬ - କଟକ ମଧୁସୂଦନ ଆଇନ୍ ମହାବିଦ୍ୟାଳୟରେ ଏହି ଉତ୍ସବ ମହାସମାରୋହରେ ପାଳନ କରାଯିବା ପାଇଁ ଅନୁରୋଧ କରାଯିବ ।

'ଆଇନଜୀବୀ ମଧୁସୂଦନ' ବିଷୟବସ୍ତୁ ଉପରେ ସେମିନାର କରାଯିବା ପାଇଁ ସ୍ଥିରହେଲା ।

୭ମ ପ୍ରସ୍ତାବ :

'ଷଢ଼େଇକଳା-ଖରସୁଆଁ'କୁ ଓଡିଶା ଫେରସ୍ତ ଆଣିବା ଦାବୀ ଉପରେ ଗତ ଅପ୍ରେଲ୍ ପହିଲା ଉତ୍କଳ ଦିବସ ଅବସରରେ ମୁଖ୍ୟମନ୍ତ୍ରୀଙ୍କର ମନ୍ତବ୍ୟ ଉପରେ ଦୃଢ଼ ପ୍ରତିବାଦ କରାଯାଇ ଏକ 'ସାମ୍ବାଦିକ ସମ୍ମିଳନୀ' ମାଧ୍ୟମରେ ଏହି ସମସ୍ୟାର ପ୍ରକୃତ ଚିତ୍ର ସରକାର ତଥା ଜନସାଧାରଣଙ୍କ ନିକଟରେ ଉପସ୍ଥାପନ କରିବା ପାଇଁ ସ୍ଥିର ହେଲା ।

ଏ ସମ୍ପର୍କରେ ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଏବଂ ବିଧାନ ସଭା ବାଚସ୍ପତିଙ୍କୁ ପତ୍ର ଲେଖି ଏବଂ ସାକ୍ଷାତ ଆଲୋଚନା କରି ସେମାନଙ୍କର ଦୃଷ୍ଟି ଆକର୍ଷଣ କରାଯିବା ପାଇଁ ନିଷ୍ପତ୍ତି ନିଆଗଲା ।

ଶ୍ରୀ ବିପିନ ବିହାରୀ ରଥ ମୁଖ୍ୟମନ୍ତ୍ରୀଙ୍କ ମନ୍ତବ୍ୟର ଦୃଢ଼ ପ୍ରତିବାଦ ପତ୍ର ପତ୍ରିକାରେ ପ୍ରକାଶ କରିବା ପାଇଁ ପ୍ରସ୍ତାବ ଦେଲେ । ଶ୍ରୀ ହରିହର ବାହିନୀପତି ଅତୀତରେ ଓଡିଶା ବିଧାନ ସଭାରେ ଷଢ଼େଇକଳା-ଖରସୁଆଁ ସମେତ ସଦର ସିଂହଭୂମି ଉପରେ ଗୃହୀତ ସର୍ବସମ୍ମତ ପ୍ରସ୍ତାବର ସୂଚନା ଦେଇ ଏ ସମ୍ପର୍କରେ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ଗ୍ରହଣ ପାଇଁ ପ୍ରସ୍ତାବ ଦେଲେ ।

ଆଚାର୍ଯ୍ୟ ଭାବାନନ୍ଦ ଷଢ଼େଇକଳା-ଖରସୁଆଁର ବିହାର ସହିତ ଅସ୍ଥାୟୀ ମିଶ୍ରଣ ଘଟଣା ଏବଂ ଗତ ପଚାଶ ବର୍ଷ ଧରି ବିହାରରେ ରହିଥିବା ସ୍ଥିତିର ବୈଧତା ଉପରେ ସର୍ବୋଚ୍ଚ ନ୍ୟାୟାଳୟରେ ବିଚାର ବିଭାଗୀୟ ସମୀକ୍ଷା ପାଇଁ ପଦକ୍ଷେପ ନେବାକୁ ପ୍ରସ୍ତାବ ଦେଲେ ।

ଷଢ଼େଇକଳା - ଖରସୁଆଁ ଓଡିଶାକୁ ଫେରସ୍ତ ଆଣିବା ପାଇଁ ଏ ସମସ୍ତ ଆବଶ୍ୟକ ପଦକ୍ଷେପ ନେବା ନିମନ୍ତେ ସର୍ମସମ୍ମତ ପ୍ରସ୍ତାବ ଗୃହୀତ ହୋଇଥିଲା ।

୮ମ ପ୍ରସ୍ତାବ :

ସ୍ୱାଧୀନତା ପ୍ରାପ୍ତିର ପଚାଶ ବର୍ଷ ମଧ୍ୟରେ ଭାରତୀୟ ସାଧାରଣତନ୍ତ୍ର ସମ୍ବିଧାନ କାର୍ଯ୍ୟକାରୀ ହେବା ଦିନଠାରୁ ରାଜ୍ୟ ସଭାକୁ ରାଷ୍ଟ୍ରପତିଙ୍କ ଦ୍ୱାରା ମନୋନୀତ ସଭ୍ୟଭାବେ ଏବଂ ରାଷ୍ଟ୍ରଦୂତ ଭାବେ ଓଡିଶାର ଜଣେ ହେଲେ ନିଯୁକ୍ତି ପାଇ ନାହାନ୍ତି, ଏହା ଅତ୍ୟନ୍ତ କ୍ଷୋଭର ବିଷୟ । ଏ ସମ୍ପର୍କରେ ରାଜ୍ୟ ସରକାର, ମହାମହିମ ରାଷ୍ଟ୍ରପତି ଓ ପ୍ରଧାନମନ୍ତ୍ରୀଙ୍କ ସଦୟ ଦୃଷ୍ଟି ଆକର୍ଷଣ କରିବା ପାଇଁ ପ୍ରସ୍ତାବ ଗୃହୀତ ହେଲା ।

ଶେଷରେ ସଭାପତିଙ୍କୁ ଧନ୍ୟବାଦ ଅର୍ପଣ ପୂର୍ବକ ସଭା ସାଙ୍ଗ ହେଲା ।

| | | |
|---|---|---|
| ଗୋପାଳକୃଷ୍ଣ ଶ୍ରୀଚନ୍ଦନ | ବସନ୍ତ କୁମାର ପାଣିଗ୍ରାହୀ | ହରିଶ୍ଚନ୍ଦ୍ର ବକ୍ସିପାତ୍ର |
| ସଚିବ | ମହାସଚିବ | ସଭାପତି |

## ତା-୨୧-୬-୯୮ ଗୁରୁବାର ପୂର୍ବାହ୍ନ ୧୦ ଘଣ୍ଟା ସମୟରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ କାର୍ଯ୍ୟକାରୀ ସମିତି ବୈଠକ ବିବରଣୀ

ଉପସ୍ଥିତ ସଭ୍ୟ :

(୧) ବିପିନ ବିହାରୀ ରଥ, ସଭ୍ୟ (୨) ବସନ୍ତ କୁମାର ପାଣିଗ୍ରାହୀ, ମହାସଚିବ (୩) ଇଂ ଅମରେନ୍ଦ୍ର କୁମାର ଦାସ, ସଭ୍ୟ (୪) ତାରାପ୍ରସାଦ ମହାପାତ୍ର, ସ୍ୱତନ୍ତ୍ର ନିମନ୍ତ୍ରିତ (୫) ବ୍ରଜସୁନ୍ଦର ପଟ୍ଟନାୟକ, ସ୍ୱତନ୍ତ୍ର ନିମନ୍ତ୍ରିତ (୬) ପଦ୍ମଚରଣ ନାୟକ, ସଭ୍ୟ (୭) ଡ: ଗୁରୁପ୍ରସାଦ ମହାନ୍ତି, ସ୍ୱତନ୍ତ୍ର ନିମନ୍ତ୍ରିତ (୮) କ୍ଷେତ୍ରମୋହନ ଶତପଥୀ, ସ୍ୱତନ୍ତ୍ର ନିମନ୍ତ୍ରିତ (୯) ଶ୍ରୀଚରଣ ସ୍ୱାଇଁ, ସଭ୍ୟ (୧୦) ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ସଚିବ

(୧୧) ଆଚାର୍ଯ୍ୟ ଭାବାନନ୍ଦ, କୋଷାଧ୍ୟକ୍ଷ (୧୨) ପତିତପାବନ ପ୍ରଧାନ, ସ୍ୱତନ୍ତ୍ର ନିମନ୍ତ୍ରିତ (୧୩) କୈଳାସ ଆଚାର୍ଯ୍ୟ,ସ୍ୱତନ୍ତ୍ର ନିମନ୍ତ୍ରିତ (୧୪) ଅରବିନ୍ଦ ପଟ୍ଟନାୟକ,ସ୍ୱତନ୍ତ୍ର ନିମନ୍ତ୍ରିତ ।

ସଭାପତି ଓ ଉପସଭାପତିଙ୍କ ଅନୁପସ୍ଥିତିରେ କାର୍ଯ୍ୟକାରୀ ସମିତି ସଦସ୍ୟ ଶ୍ରୀଯୁକ୍ତ ବିପିନ ବିହାରୀ ରଥଙ୍କ ସଭାପତିତ୍ୱରେ ବୈଠକ ନିର୍ଦ୍ଧାରିତ ସମୟରେ ଅନୁଷ୍ଠିତ ହୋଇଥିଲା ।

## ଶୋକ ପ୍ରସ୍ତାବ

ସଭାପତିଙ୍କ ନିର୍ଦ୍ଦେଶ କ୍ରମେ କାର୍ଯ୍ୟକାରୀ ସମିତିର ସ୍ୱତନ୍ତ୍ର ନିମନ୍ତ୍ରିତ ସଭ୍ୟ ସ୍ୱର୍ଗତ ବଳରାମ ମହାନ୍ତିଙ୍କ ସ୍ମୃତି ଉଦ୍ଦେଶ୍ୟରେ ଶୋକ ପ୍ରସ୍ତାବ ଗ୍ରହଣ ପୂର୍ବକ ଦିବଂଗତ ଆତ୍ମାର ସଦ୍‌ଗତି ପାଇଁ ଦୁଇ ମିନିଟ୍ ନୀରବ ପ୍ରାର୍ଥନା କରାଯାଇଥିଲା ।

ଗତ ୫-୪-୯୮ ରେ ଅନୁଷ୍ଠିତ ବୈଠକ ବିବରଣୀ ପାଠ କରାଯାଇ ଠିକ୍ ଥିବାରୁ ଦୃଢ଼ୀକୃତ କରାଗଲା ଏବଂ ଗୃହୀତ ପ୍ରସ୍ତାବଗୁଡ଼ିକ ଉପରେ କରାଯାଇଥିବା କାର୍ଯ୍ୟାନୁଷ୍ଠାନର ସମୀକ୍ଷା କରାଯାଇଥିଲା ।

## ଜିଲ୍ଲା ଶାଖା ଗଠନ ଓ ପରିଷଦକୁ ନିର୍ବାଚନ

ଗତ ବୈଠକରେ ଗୃହୀତ ପ୍ରସ୍ତାବ ଅନୁଯାୟୀ ସମସ୍ତ ଜିଲ୍ଲା ଶାଖା ଗଠନ ଓ ସାଧାରଣ ପରିଷଦକୁ ପ୍ରତି ଜିଲ୍ଲାରୁ ଦଶ ଜଣ କରି ସଭ୍ୟ ନିର୍ବାଚନ ୧୯୯୮ ମେ ୩୧ ସୁଦ୍ଧା ସଂପନ୍ନ ହେବାର ଥିଲା । ମାତ୍ର ତାହା ସବୁ ଜିଲ୍ଲାରେ କାର୍ଯ୍ୟକାରୀ ହୋଇ ପାରିନାହିଁ । ଆଗାମୀ ଜୁଲାଇ ୩୧ ମଧ୍ୟରେ ଏହା ସଂପନ୍ନ କରିବା ପାଇଁ ଦାୟିତ୍ୱରେ ଥିବା ସମସ୍ତ ସଭ୍ୟଙ୍କୁ ଅନୁରୋଧ ଜଣାଇ ପ୍ରସ୍ତାବ ଗୃହୀତ ହୋଇଥିଲା ।

## ବୈଠକ ବିବରଣୀ

କାର୍ଯ୍ୟକାରୀ ସମିତି ବୈଠକ ବିବରଣୀ କାର୍ଯ୍ୟକାରୀ ସମିତି ସଭ୍ୟ ଓ ଜିଲ୍ଲା ଶାଖାମାନଙ୍କୁ ବିହିତ କାର୍ଯ୍ୟାନୁଷ୍ଠାନ ପାଇଁ ପଠାଯିବା ନିମନ୍ତେ ସ୍ଥିର ହେଲା ।

## ମଧୁବାବୁଙ୍କ ଦେଢ଼ଶହ ବର୍ଷ ପୂର୍ତ୍ତି ଜନ୍ମବାର୍ଷିକୀ ପାଳନ

ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ଦେଢ଼ଶହ ବର୍ଷ ପୂର୍ତ୍ତି ଜନ୍ମ ବାର୍ଷିକୀର ବର୍ଷ ବ୍ୟାପୀ ପାଳନ ସଂପର୍କରେ ଆଲୋଚନା କରାଯାଇଥିଲା । ଅଧ୍ୟାପକ କ୍ଷେତ୍ରମୋହନ ଶତପଥୀ ଶୈଳବାଳା ମହିଳା ମହାବିଦ୍ୟାଳୟ ଓ ମଧୁସୂଦନ ଆଇନ୍ ମହାବିଦ୍ୟାଳୟରେ ମଧୁବାବୁଙ୍କ ଜୟନ୍ତୀ ପାଳନ ପାଇଁ ସଂପୃକ୍ତ ମହାବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ସହ ଯୋଗାଯୋଗ କରି କାର୍ଯ୍ୟକ୍ରମ ପ୍ରସ୍ତୁତ କରିବେ ବୋଲି ସ୍ଥିର ହେଲା ।

ଶ୍ରୀ କ୍ଷେତ୍ରମୋହନ ଶତପଥୀ ଓ ଆଚାର୍ଯ୍ୟ ଭାବାନନ୍ଦ ମଧୁବାବୁଙ୍କ ଜନ୍ମପୀଠ ସତ୍ୟଭାମାପୁରଠାରେ ଉତ୍କଳ ସମ୍ମିଳନୀ କାର୍ଯ୍ୟକାରୀ ସମିତିର ପରବର୍ତ୍ତୀ ବୈଠକ କରିବା ପାଇଁ ବ୍ୟବସ୍ଥା କରିବେ ବୋଲି ପ୍ରସ୍ତାବ ଗୃହୀତ ହେଲା ।

ମଧୁବାବୁଙ୍କର ଏକ ସଂକ୍ଷିପ୍ତ ଜୀବନୀ ପ୍ରକାଶନ ପାଇଁ ଅଧ୍ୟାପକ କୈଳାସ ଆଚାର୍ଯ୍ୟ ପ୍ରସ୍ତାବ ଦେଇଥିଲେ ।

ସ୍ୱତନ୍ତ୍ର ନିମନ୍ତ୍ରିତ ଗଞ୍ଜାମ ଜିଲ୍ଲା ଶାଖା ସଭାପତି ଶ୍ରୀ ବ୍ରଜସୁନ୍ଦର ପଟ୍ଟନାୟକ ମଧୁବାବୁଙ୍କର ସ୍ମୃତି ରକ୍ଷାର୍ଥେ ପ୍ରସ୍ତାବ ଦେଇ ସେ ଓଡିଶାର ବହୁକ୍ଷେତ୍ରରେ ପ୍ରଥମ ଥିଲେ ବୋଲି କହି ଉତ୍କଳ ଗୌରବଙ୍କର ଗୁଣାବଳୀ ବର୍ଣ୍ଣନା କରିଥିଲେ । ମଧୁବାବୁଙ୍କ ଜନ୍ମ ଦିବସକୁ 'ଆଇନଜୀବୀ ଦିବସ' ଭାବେ ପାଳିବା ପାଇଁ ଶ୍ରୀ ପଟ୍ଟନାୟକ ପ୍ରସ୍ତାବ ଦେଇଥିଲେ ।

ଡାଃ ଗୁରୁପ୍ରସାଦ ମହାନ୍ତି ମଧୁବାବୁଙ୍କ ସଂପର୍କରେ ପ୍ରକାଶିତ ସମସ୍ତ ବହି ସଂଗ୍ରହ କରାଯିବାକୁ ପ୍ରସ୍ତାବ ଦେଲେ ।

ଶ୍ରୀ କ୍ଷେତ୍ରମୋହନ ଶତପଥୀ ପ୍ରସ୍ତାବ ଦେଲେ - ଅଧ୍ୟାପକ କୈଳାସ ଆଚାର୍ଯ୍ୟ ମଧୁବାବୁଙ୍କର ସଂକ୍ଷିପ୍ତ ଜୀବନୀର ରଚନା ଓ ପ୍ରକାଶନ ଦାୟିତ୍ୱ ନିର୍ବାହ କରିବେ । ଉତ୍କଳ ସମ୍ମିଳନୀ ତରଫରୁ ଏହି ଜୀବନୀ ପ୍ରକାଶିତ ହେବ ବୋଲି ପ୍ରସ୍ତାବ ଗୃହୀତ ହେଲା ।

<u>ବାର୍ଷିକ ଅଧିବେଶନ</u>

ବିଗତ ୭-୧୨-୯୭ କାର୍ଯ୍ୟକାରୀ ସମିତି ବୈଠକରେ ୧୯୯୮ ଜାନୁଆରୀ ପ୍ରଥମ ସପ୍ତାହରେ ସମ୍ମିଳନୀର ବାର୍ଷିକ ଅଧିବେଶନ କରାଯିବ ବୋଲି (ଅଷ୍ଟମ) ପ୍ରସ୍ତାବ ଗୃହୀତ ହୋଇଥିଲା । ଝାରସୁଗୁଡାରେ ବାର୍ଷିକ ଅଧିବେଶନ ହେବା ପାଇଁ ପ୍ରସ୍ତୁତି ବିଳମ୍ବିତ ହେବାରୁ ଗତ ୫-୪-୯୮ ବୈଠକରେ ୧୯୯୮ ସେପ୍ଟେମ୍ବର ୧୨ ଓ ୧୩ ଦୁଇ ଦିନ ତାଳଚେରଠାରେ ବାର୍ଷିକ ଅଧିବେଶନ କରାଇବା ପାଇଁ କାର୍ଯ୍ୟକାରୀ ସମିତି ସଭ୍ୟ ଶ୍ରୀ ବସନ୍ତ କୁମାର ତ୍ରିପାଠୀଙ୍କୁ ଦିଆଯାଇ (ପ୍ରଥମ) ପ୍ରସ୍ତାବ ଗୃହୀତ ହୋଇଥିଲା । ବର୍ତ୍ତମାନ ସୁଦ୍ଧା ଶ୍ରୀ ତ୍ରିପାଠୀଙ୍କଠାରୁ ଆସ୍ତିବାଚକ ସୂଚନା ମିଳି ନ ଥିବାରୁ ଝାର୍ସୁଗୁଡାର ଗୁରୁତ୍ୱ ଦୃଷ୍ଟିରୁ ସେଠାରେ ବାର୍ଷିକ ଅଧିବେଶନ କରିବା ପାଇଁ ସଭ୍ୟ ଶ୍ରୀ ପତିତପାବନ ପ୍ରଧାନଙ୍କୁ ଦାୟିତ୍ୱ ଦିଆଗଲା । ସେପ୍ଟେମ୍ବର ୧୯ ଓ ୨୦ ରେ ଝାରସୁଗୁଡାଠାରେ ବାର୍ଷିକ ଅଧିବେଶନ ବସିବା ପାଇଁ ଆପାତତଃ ସ୍ଥିର କରାଯାଇ ପ୍ରସ୍ତାବ ଗୃହୀତ ହେଲା ।

ଇତି ମଧ୍ୟରେ ଯଦି ତାଳଚେରରେ ପ୍ରସ୍ତୁତି ଚାଲିଥାଏ, ତେବେ ସେଠାରେ ବାର୍ଷିକ ଅଧିବେଶନ କରାଯାଇ ଝାରସୁଗୁଡାଠାରେ ଏକ ସ୍ୱତନ୍ତ୍ର ଅଧିବେଶନ କରାଯିବା ପାଇଁ ମଧ୍ୟ ସ୍ଥିର ହେଲା । ଝାରସୁଗୁଡାରେ ଅଧିବେଶନ ହେବା ପାଇଁ ଅଭ୍ୟର୍ଥନା ସମିତି ଗଠିତ ହୋଇଥିବା ଶ୍ରୀ ପତିତପାବନ ପ୍ରଧାନ ପ୍ରକାଶ କଲେ ।

<u>ଆଜୀବନ ସଭ୍ୟ ତାଲିକା</u>

ବାର୍ଷିକ ଅଧିବେଶନ ପୂର୍ବରୁ ଆଜୀବନ ସଭ୍ୟ ତାଲିକା ଅଦ୍ୟତନ କରାଯିବା ପାଇଁ ସ୍ଥିର ହେଲା ।

ସମ୍ମିଳନୀର ଆୟ ବ୍ୟୟ

ଉତ୍କଳ ସମ୍ମିଳନୀର ବାର୍ଷିକ ଆୟ ବ୍ୟୟ ସମ୍ପର୍କରେ ଆଲୋଚନା କରାଗଲା । ମହାସଚିବ ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ ୧୯୮୬ ରେ ଉତ୍କଳ ସମ୍ମିଳନୀ ଡେଭେଲପ୍‌ମେଣ୍ଟ ଟ୍ରଷ୍ଟ ଗଠିତ ହୋଇ ଏକ ଲକ୍ଷ ·ଏକ ହଜାର ଟଙ୍କା ଲୋକସେବକ ମଣ୍ଡଳ ତଥା 'ସମାଜ' ଅନୁଷ୍ଠାନ ତରଫରୁ ବ୍ୟାଙ୍କରେ ଗଚ୍ଛିତ ଥିବା ପ୍ରକାଶ କରିଥିଲେ । ମାତ୍ର ଏହି ଟ୍ରଷ୍ଟ ଉତ୍କଳ ସମ୍ମିଳନୀଠାରୁ ସ୍ୱତନ୍ତ୍ର ଅଟେ ଏବଂ ସମ୍ମିଳନୀର କର୍ତ୍ତୃତ୍ୱାଧୀନ ନୁହେଁ । କେବଳ ମଝିରେ ମଝିରେ ସୁଧ ମିଳିଥାଏ । ଗତ କେତେ ବର୍ଷ ହେଲା ଟ୍ରଷ୍ଟର ବୈଠକ ବସି ନ ଥିବାରୁ ବାର୍ଷିକ ସୁଧ ବାବଦକୁ ଅନୁଦାନ ଉତ୍କଳ ସମ୍ମିଳନୀକୁ ମିଳି ନାହିଁ । ଏହି ସ୍ପଷ୍ଟୀକରଣ ଉପସ୍ଥିତ ସଭ୍ୟମାନଙ୍କୁ ସନ୍ତୁଷ୍ଟ କରି ପାରି ନ ଥିଲା । ସଭ୍ୟମାନେ ମତ ଦେଲେ, ଉତ୍କଳ ସମ୍ମିଳନୀ ଡେଭେଲପ୍‌ମେଣ୍ଟ ଟ୍ରଷ୍ଟ ନାମକରଣରୁ ହିଁ ସମ୍ମିଳନୀ ସହ ଟ୍ରଷ୍ଟର ଐକାନ୍ତିକ ଆନୁଷ୍ଠାନିକ ସଂପର୍କ ସୁସ୍ପଷ୍ଟ । ସମ୍ମିଳନୀର ମହାସଚିବ ଏହାର ଟ୍ରେଜେରର୍ ଥିବା ଏବଂ ଦିବଂଗତ ସଭାପତି ଡକ୍ଟର ରାଧାନାଥ ରଥ ଏହାର ପୂର୍ବତନ ଅଧ୍ୟକ୍ଷ (ମୃତ୍ୟୁ ପର୍ଯ୍ୟନ୍ତ) ଥିବାରୁ ଏହି ଟ୍ରଷ୍ଟର ପାଣ୍ଠି ଓ ଆର୍ଥିକ ସ୍ଥିତି ଉପରେ ଉତ୍କଳ ସମ୍ମିଳନୀର ଅଧିକାର ଓ ସଂପର୍କ ନିଶ୍ଚୟ ସଂଶୟର ଊର୍ଦ୍ଧ୍ୱରେ ବୋଲି ସଭ୍ୟମାନେ ମତ ଦେଇଥିଲେ ।

ସମ୍ମିଳନୀର ହିସାବ ସମୀକ୍ଷା

ଆଗାମୀ ୧୭-୬-୯୮ ରେ ମହାସଚିବ, ସଚିବ ଓ କୋଷାଧ୍ୟକ୍ଷ ଏକତ୍ରିତ ହୋଇ ସମ୍ମିଳନୀର ଏ ଯାବତ୍ ଆୟ ବ୍ୟୟର ସମନ୍ୱିତ ଫର୍ଦ୍ଦ ପ୍ରସ୍ତୁତ କରିବେ ଏବଂ ଜୁନ୍ ୩୦ ମଧ୍ୟରେ ଅଡିଟ୍ ସଂପନ୍ନ ହେବ ବୋଲି ପ୍ରସ୍ତାବ ଗୃହୀତ ହେଲା ।

ଉତ୍କଳ ସମ୍ମିଳନୀ ସମାଚାର ପ୍ରକାଶନ

ଉତ୍କଳ ସମ୍ମିଳନୀ ସମାଚାର ରୀତିମତ ପ୍ରକାଶ କରିବା ପାଇଁ ସ୍ଥିର ହେଲା ଏବଂ ସମସ୍ତ ଆଜୀବନ ସଭ୍ୟ ପ୍ରକାଶନ ପାଇଁ ବାର୍ଷିକ (ବାର ଖଣ୍ଡ ପାଇଁ) ୩୦ ଟଙ୍କା ଅନୁଦାନ ଦେବାକୁ ଅନୁରୋଧ କରାଯାଇ ପ୍ରସ୍ତାବ ଗୃହୀତ ହେଲା ।

କୁପନରେ ପାଣ୍ଠି ସଂଗ୍ରହ

ଏ ସଂପର୍କରେ ଆଗାମୀ ବୈଠକରେ ନିଷ୍ପତ୍ତି ନେବା ପାଇଁ ସଭାପତି ନିର୍ଦ୍ଦେଶ ଦେଲେ ଏବଂ ଏହା ଗୃହୀତ ହେଲା ।

ବନାଞ୍ଚଳ ରାଜ୍ୟ ଗଠନ ପରିପ୍ରେକ୍ଷୀରେ ଷଢେଇକଳା-ଖରସୁଆଁ ଓ ବିଚ୍ଛିନ୍ନାଞ୍ଚଳ ସମୀକ୍ଷା

ସଂପ୍ରତି ଷଢ଼େଇକଳା-ଖରସୁଆଁର ବାସ୍ତବ ଅବସ୍ଥା ଅନୁଧ୍ୟାନ କରାଯିବା ଉଚିତ ବୋଲି ଶ୍ରୀ ପତିତପାବନ ପ୍ରଧାନ ମତ ଦେଲେ । ଓଡିଶା ସରକାର ଅତୀତରେ ବାହ୍ୟ ଚାପର ବଶବର୍ତ୍ତୀ ହୋଇ ଷଢ଼େଇକଳା-ଖରସୁଆଁକୁ ବିହାରରେ ମିଶିବାକୁ ଛାଡି ଦେଇଛନ୍ତି;

ବର୍ତ୍ତମାନ ଓଡିଶା ସରକାର ଏହି ଦୁଇ ପୂର୍ବତନ ଓଡିଆ ଦେଶୀୟ ରାଜ୍ୟ ଫେରସ୍ତ ଆଣିବା ପାଇଁ 'ବନାଞ୍ଚଳ ରାଜ୍ୟ' ଗଠନ ସମୟରେ ଉଦ୍ୟମ କରିବା ସର୍ବାଦୌ ଉଚିତ ବୋଲି ସର୍ବସମ୍ମତ ମତ ପ୍ରକାଶ ପାଇଥିଲା । ଗତ ୩-୧୦-୯୭ ରେ ମହାସଚିବ ଏ ସଂପର୍କରେ ପ୍ରଧାନମନ୍ତ୍ରୀଙ୍କୁ ଲେଖିଥିବା ବିଷୟ ଉଲ୍ଲେଖ କରିଥିଲେ ।

ମହାମହିମ ରାଷ୍ଟ୍ରପତିଙ୍କ ଆନୁକୂଲ୍ୟରେ ଷଢ଼େଇକଳା-ଖରସୁଆଁର ବିହାରରେ ମିଶ୍ରଣ ପ୍ରସଙ୍ଗରେ ସର୍ବୋଚ୍ଚ ନ୍ୟାୟାଳୟରେ ସମୀକ୍ଷା କରାଯିବା ପାଇଁ ସଭ୍ୟମାନେ ମତ ଦେଇଥିଲେ । ଅତୀତରେ ୧୯୬୭ ରେ କୁଟିଆ ଗ୍ରାମ ପୁଞ୍ଜ ସଂପର୍କରେ ରାଜ୍ୟ ସରକାର ସୁପ୍ରିମ୍ କୋର୍ଟଙ୍କ ଦ୍ୱାରସ୍ଥ ହୋଇଥିଲେ । ସେ ମାମଲା ଏ ପର୍ଯ୍ୟନ୍ତ ତୁଟିବାକୁ ନାହିଁ । ସେ ଦୃଷ୍ଟିରୁ ଷଢ଼େଇକଳା-ଖରସୁଆଁର ରାଜନୈତିକ ସ୍ତରରେ ସମାଧାନ ଅଧିକ ସ୍ପୃହଣୀୟ ବୋଲି ମତ ପ୍ରକାଶ ପାଇଥିଲା । ଏଥିପାଇଁ ଲୋକମତ ଜାଗରଣ କରାଯିବା ପାଇଁ ସ୍ଥିର ହେଲା ।

ଷଢ଼େଇକଳା-ଖରସୁଆଁ ସମେତ ଓଡିଆ ବିଚ୍ଛିନ୍ନାଞ୍ଚଳ ସମସ୍ୟା ସଂପର୍କରେ ଦିଲ୍ଲୀଠାରେ ପାର୍ଲିଆମେଣ୍ଟ ଅଧିବେଶନ ସମୟରେ ଏକ ପ୍ରତିନିଧି ଦଳ ଓଡିଶାର ସାଂସଦମାନଙ୍କୁ କେନ୍ଦ୍ର ମନ୍ତ୍ରୀ ଶ୍ରୀ ଦିଲ୍ଲୀପ ରାୟଙ୍କ ଆନୁକୂଲ୍ୟରେ ସାକ୍ଷାତ କରିବା ପାଇଁ ସ୍ଥିର ହେଲା । ଜୁଲାଇ ମାସରେ ଏହି ପ୍ରତିନିଧି ଦଳ ଦିଲ୍ଲୀ ଯିବେ । ପ୍ରତିନିଧି ଦଳରେ ସର୍ବଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର, ବସନ୍ତ କୁମାର ପାଣିଗ୍ରାହୀ, ପତିତପାବନ ପ୍ରଧାନ ଓ କୈଳାସ ଆଚାର୍ଯ୍ୟ ଯିବେ ବୋଲି ସ୍ଥିର ହେଲା ।

<u>ଅଣ ଓଡିଆ ଓ ବିଦେଶୀମାନଙ୍କ ପାଇଁ 'ଓଡିଆ ଅଧ୍ୟୟନ କେନ୍ଦ୍ର'</u>

ଏଥିପାଇଁ ଗଠିତ ସବ୍ କମିଟିର ଅଧ୍ୟକ୍ଷ ଡକ୍ଟର ଅରବିନ୍ଦ ପଟ୍ଟନାୟକ ଅଣ ଓଡିଆ ଓ ବିଦେଶୀ ମାନଙ୍କ ପାଇଁ ଓଡିଆ ଭାଷା ସଂସ୍କୃତି ଶିକ୍ଷା ନିମନ୍ତେ 'ଓଡିଆ ଅଧ୍ୟୟନ କେନ୍ଦ୍ର'ର ପାଠ୍ୟକ୍ରମ ଯୋଜନା ପେଶ୍ କରି ଏକ ପରିଚାଳନା କମିଟି ଗଠନର ପ୍ରସ୍ତାବ ଦେଇଥିଲେ । ପରିଚାଳନା କମିଟିରେ ନିମ୍ନଲିଖିତ ସଭ୍ୟ ରହିବା ସ୍ଥିର ହେଲା ।

(୧) ଆଚାର୍ଯ୍ୟ ଭାବାନନ୍ଦ, ଅଧ୍ୟକ୍ଷ (୨) ଡକ୍ଟର ଅରବିନ୍ଦ ପଟ୍ଟନାୟକ, ନର୍ଦ୍ଦେଶକ ତଥା ସଚିବ (୩) ଡକ୍ଟର ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ସଦସ୍ୟ (୪) ପ୍ରଫେସର ଗଗନେନ୍ଦ୍ର ନାଥ ଦାଶ, ସଦସ୍ୟ (୫) ଅଧ୍ୟାପକ କୈଳାସ ଆଚାର୍ଯ୍ୟ, ସଦସ୍ୟ (୬) ଉଚ୍ଚଶିକ୍ଷା ମନ୍ତ୍ରୀଙ୍କ ମନୋନୀତ ବ୍ୟକ୍ତି, ସଦସ୍ୟ (୭) ଉତ୍କଳ ବିଶ୍ୱବିଦ୍ୟାଳୟ କୁଳପତିଙ୍କ ମନୋନୀତ ବ୍ୟକ୍ତି, ସଦସ୍ୟ ।

<u>ରାଜ୍ୟରେ ଅଂଶୁଘାତ ମୃତ୍ୟୁ</u>

ଏ ସମ୍ପର୍କରେ ନିମ୍ନ ପ୍ରସ୍ତାବ ଗୃହୀତ ହୋଇଥିଲା । ଉତ୍କଳ ସମ୍ମିଳନୀ କାର୍ଯ୍ୟକାରୀ କମିଟିର ଆଜିର ଏହି ବୈଠକ ସର୍ବସମ୍ମତି କ୍ରମେ ପ୍ରସ୍ତାବ ଗ୍ରହଣ କରୁଅଛି ଯେ ରାଜ୍ୟରେ

ଏକ ମାସ ମଧ୍ୟରେ ଅଂଶୁଘାତରେ ଅପ୍ରତ୍ୟାଶିତ ଭାବେ ପ୍ରାୟ ୨୦୦୦ ରୁ ଊର୍ଦ୍ଧ୍ୱ ଲୋକ ମୃତ୍ୟୁବରଣ କରିଥିଲେ ମଧ୍ୟ ଏ ସମ୍ପର୍କରେ ରାଜ୍ୟ ଓ କେନ୍ଦ୍ର ସରକାର ଯେତେ ପରିମାଣରେ ତତ୍ପର ହୋଇ ପ୍ରତିଶେଧକ ଓ ପ୍ରତିକାର ମୂଳକ ପଦକ୍ଷେପ ଗ୍ରହଣ କରିବା କଥା, ତାହା କରି ନାହାନ୍ତି ।

ଏପରି ଏକ ପ୍ରାକୃତିକ ବିପର୍ଯ୍ୟୟ ଏତେ ବ୍ୟାପକ ଭାବେ ଘଟିଥିଲେ ମଧ୍ୟ ମୃତ୍ୟୁବରଣ କରିଥିବା ଲୋକଙ୍କ ପରିବାରକୁ କୌଣସି କ୍ଷତିପୂରଣ ଦିଆଯାଇ ନାହିଁ ଏବଂ ଧାରାବାହିକ ଭାବେ ମୃତ୍ୟୁ ମୁଖରେ ପଡୁଥିବା ଲୋକମାନଙ୍କୁ ବିପଦରୁ ରକ୍ଷା କରିବା ପାଇଁ ଆବଶ୍ୟକୀୟ ସଚେତନତା ସୃଷ୍ଟି କରାଯାଇ ନାହିଁ ।

ଅଂଶୁଘାତ ଆକ୍ରାନ୍ତ ରୋଗୀମାନଙ୍କୁ ଆଶୁ ଚିକିତ୍ସାରେ ଘୋର ଅବହେଳା କରାଯାଇଛି । ଉତ୍କଳ ସମ୍ମିଳନୀ ଏପରି ଏକ ଅମାନବିକ କାର୍ଯ୍ୟ ପାଇଁ ଗଭୀର କ୍ଷୋଭ ପ୍ରକାଶ କରିବା ସହିତ ଦୃଢ଼ଦାବୀ କରୁଛି ଯେ ସମଗ୍ର ଘଟଣାର ବ୍ୟାପକତା ଓ ଗମ୍ଭୀରତା ଦୃଷ୍ଟିରୁ ଏହାର ଏକ ସାମଗ୍ରିକ ତଦନ୍ତ ଓଡିଶା ଉଚ୍ଚ ନ୍ୟାୟଳୟର କାର୍ଯ୍ୟରତ ଜଣେ ମାନ୍ୟବର ବିଚାରପତିଙ୍କ ଦ୍ୱାରା ଅନୁସନ୍ଧାନ କରାଯାଉ ।

ଭବିଷ୍ୟତରେ ଏହାର ଯେପରି ପୁନରାବୃତ୍ତି ନ ଘଟେ, ସେଥିପାଇଁ ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ସରକାରୀ ନିଷ୍ପତ୍ତି ଗ୍ରହଣ କରାଯାଉ ।

ରାଜ୍ୟ ମୁଖ୍ୟମନ୍ତ୍ରୀ ଓ ଭାରତର ପ୍ରଧାନମନ୍ତ୍ରୀ ବ୍ୟକ୍ତିଗତ ଭାବରେ ଏଥିପ୍ରତି ସମ୍ବେଦନଶୀଳ ହୋଇ ଆର୍ତ୍ତ ପରିବାରମାନଙ୍କୁ ଆବଶ୍ୟକୀୟ ସାହାଯ୍ୟ ତୁରନ୍ତ ପ୍ରଦାନ କରନ୍ତୁ ଏବଂ ରାଜ୍ୟ ସରକାର ଏ ସମ୍ପର୍କରେ ଏକ 'ଶ୍ୱେତ ପତ୍ର' ପ୍ରକାଶ କରନ୍ତୁ ।

କେନ୍ଦ୍ର ସରକାରଙ୍କୁ ଏ ଦିଗରେ ବିହିତ ପଦକ୍ଷେପ ଗ୍ରହଣ କରିବା ପାଇଁ ପ୍ରଧାନମନ୍ତ୍ରୀଙ୍କଠାରେ ଦୃଢ଼ ଦାବୀ ଉପସ୍ଥାପିତ କରିବା ନିମନ୍ତେ ଓଡିଶାର ସାଂସଦମାନଙ୍କୁ କାର୍ଯ୍ୟକାରୀ କମିଟି ଅନୁରୋଧ କରୁଛି ।

ଶେଷରେ ସଭାପତିଙ୍କୁ ଧନ୍ୟବାଦ ଅର୍ପଣ କରାଯାଇ ସଭା ସାଙ୍ଗ ହେଲା ।

| | | |
|---|---|---|
| ଗୋପାଳକୃଷ୍ଣ ଶ୍ରୀଚନ୍ଦନ | ବସନ୍ତ କୁମାର ପାଣିଗ୍ରାହୀ | ବିପିନ ବିହାରୀ ରଥ |
| ସଚିବ | ମହାସଚିବ | ସଭାପତି |

# ତା-୧୨-୯-୯୮ ଅପରାହ୍ନ ୩ ଘଣ୍ଟା ସମୟରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ କାର୍ଯ୍ୟକାରୀ ସମିତି ବୈଠକ ବିବରଣୀ

ଉପସ୍ଥିତ ସଭ୍ୟ :

(୧) ହରିଶ୍ଚନ୍ଦ୍ର ବକ୍ସିପାତ୍ର (୨) ହରିହର ବାହିନୀପତି (୩) ରାଜେନ୍ଦ୍ର ଚନ୍ଦ୍ର ଦେବ (୪) ପଦ୍ମଚରଣ ନାୟକ (୫) ଅରୁଣ ଶଙ୍କର ମିଶ୍ର (୬) କିରଣ ଚନ୍ଦ୍ର ଦେବ (୭) ପୁଷ୍ପେନ୍ଦ୍ର ଚନ୍ଦ୍ର ଦେବ (୮) ଚକ୍ର ପ୍ରକାଶ ଦେବ (୯) ଶ୍ରୀଚରଣ ସ୍ୱାଇଁ (୧୦) ଅନ୍ନପୂର୍ଣ୍ଣା ମିଶ୍ର (୧୧) ବିପିନ ବିହାରୀ ରଥ (୧୨) ଆଚାର୍ଯ୍ୟ ଭାବାନନ୍ଦ (୧୩) ଗୋପାଳକୃଷ୍ଣ ଶ୍ରୀଚନ୍ଦନ (୧୪) ସୁରେନ୍ଦ୍ର ମୋହନ ପଣ୍ଡା (୧୫) ବସନ୍ତ କୁମାର ପାଣିଗ୍ରାହୀ (୧୬) କୃଷ୍ଣଚନ୍ଦ୍ର ପଣ୍ଡା ।

କାର୍ଯ୍ୟବାହୀ ସଭାପତି ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ସଭାପତିତ୍ୱରେ ବୈଠକ ବସିଥିଲା ।

## ଶୋକ ପ୍ରସ୍ତାବ

ବୈଠକ ପ୍ରାରମ୍ଭରେ ଓଡିଶାର ଦିବଂଗତ ଦୁଇଜଣ ସଂସ୍କୃତି ପୁରୁଷ ଅଧ୍ୟାପକ ରାଜକିଶୋର ରାୟ ଏବଂ କବି ଜୀବନାନନ୍ଦ ପାଣିଙ୍କ ସ୍ମୃତି ଚାରଣ କରାଯାଇ ଦୁଇ ମିନିଟ୍ ନୀରବ ପ୍ରାର୍ଥନା କରାଯାଇଥିଲା ।

ଉତ୍କଳ ସମ୍ମିଳନୀର କଟକ ଜିଲ୍ଲା ଶାଖା ସଭାପତି ଅଧ୍ୟାପକ କ୍ଷେତ୍ରମୋହନ ଶତପଥୀ ଦିଲ୍ଲୀଠାରେ ଚିକିତ୍ସାଧୀନ ଥିବାରୁ ତାଙ୍କର ଆଶୁ ଆରୋଗ୍ୟ କାମନା କରାଯାଇଥିଲା ।

ସଭ୍ୟ ଶ୍ରୀ ବିପିନ ବିହାରୀ ରଥଙ୍କ ପ୍ରସ୍ତାବ କ୍ରମେ ଯୁକ୍ତରାଷ୍ଟ୍ର ଆମେରିକା ଗସ୍ତରେ ଥିବା କଟକ ଜିଲ୍ଲା ଶାଖା ଉପସଭାପତି ଡାକ୍ତର ଗୁରୁପ୍ରସାଦ ମହାନ୍ତି ଆମେରିକାରେ ବସବାସ କରୁଥିବା ଓଡିଆମାନଙ୍କୁ ଆଜୀବନ ସଭ୍ୟ କରିବା ସହ ଉତ୍କଳ ସମ୍ମିଳନୀର ଶାଖା ଗଠନ ପାଇଁ ଉଦ୍ୟମ କରିଥିବାରୁ ତାଙ୍କୁ ଅଭିନନ୍ଦନ ଜ୍ଞାପନ କରାଗଲା । ଏହା ଜଣାଇ ଦେବା ପାଇଁ ସଚିବଙ୍କୁ ଅନୁରୋଧ କରାଗଲା ।

ଗତ ୧୧-୬-୯୮ ରେ ଅନୁଷ୍ଠିତ ବୈଠକ ବିବରଣୀ ପାଠ କରାଯାଇ ଠିକ୍ ଥିବାରୁ ଦୃଢ଼ୀଭୂତ କରାଯାଇ କାର୍ଯ୍ୟାନୁଷ୍ଠାନ ଉପରେ ସମୀକ୍ଷା କରାଗଲା ।

ଆଗକୁ 'ବନାଞ୍ଚଳ ରାଜ୍ୟ' ଗଠନ ଦୃଷ୍ଟିରୁ ଷଢ଼େଇକଳା-ଖରସୁଆଁକୁ ଓଡିଶାକୁ ଫେରାଇ ଦେବା ସମ୍ପର୍କରେ ସାଂସଦ ଓ ପ୍ରଧାନମନ୍ତ୍ରୀଙ୍କ ସହ ସାକ୍ଷାତ ଆଲୋଚନା ନିମନ୍ତେ ଦିଲ୍ଲୀ ଯିବାକୁ ଗଠିତ ପ୍ରତିନିଧି ମଣ୍ଡଳ କଣ କଲେ - ସେ ସମ୍ବନ୍ଧରେ ସଭ୍ୟ ଶ୍ରୀ ହରିହର ବାହିନୀପତି ଜାଣିବାକୁ ଚାହିଁଥିଲେ । କେତେକ ଅନିର୍ବାଯ୍ୟ ଅସୁବିଧା ହେତୁ ଏହି କାର୍ଯ୍ୟକ୍ରମ କାର୍ଯ୍ୟକାରୀ ହୋଇ ପାରି ନ ଥିବା ଜଣାଗଲା ।

ଏ ସମ୍ପର୍କରେ ସର୍ବଶ୍ରୀ ଅରୁଣ ଶଙ୍କର ମିଶ୍ର, ସଭାପତି ଶ୍ରୀ ବକ୍ସିପାତ୍ର, ହରିହର ବାହିନୀପତି, ଆଚାର୍ଯ୍ୟ ଭାବାନନ୍ଦ, ବିପିନି ବିହାରୀ ରଥ, ରାଜେନ୍ଦ୍ର ଚନ୍ଦ୍ର ଦେବ, ମହାସଚିବ ବସନ୍ତ କୁମାର ପାଣିଗ୍ରାହୀ ପ୍ରମୁଖ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ । ଷଢ଼େଇକଳା-ଖରସୁଆଁ ସମ୍ପର୍କରେ ନିମ୍ନଲିଖିତ ସଭ୍ୟମାନଙ୍କୁ ନେଇ ଏକ 'ସ୍ମାରକ ପତ୍ର ପ୍ରସ୍ତୁତି କମିଟି' ଗଠିତ ହେଲା । ଶ୍ରୀ ହରିହର ବାହିନୀପତି, ଅଧ୍ୟକ୍ଷ; ଶ୍ରୀ ବିପିନ ବିହାରୀ ରଥ ଓ ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ, ସଦସ୍ୟ ।

ବିଗତ ସୀମା କମିଶନ ଦଲିଲ, ଦେଶୀୟ ରାଜ୍ୟ ମିଶ୍ରଣ ଦଲିଲ ପ୍ରଭୃତି ସଂଗ୍ରହ କରି ଆଗାମୀ ୨୭-୯-୯୮ ଅପରାହ୍ନ ୪ଟା ସମୟରେ ସମ୍ମିଳନୀ କେନ୍ଦ୍ର କାର୍ଯ୍ୟାଳୟଠାରେ ସ୍ମାରକ ପତ୍ର ପ୍ରସ୍ତୁତି କମିଟିର ବୈଠକ ବସି ସ୍ମାରକପତ୍ର ଚୂଡ଼ାନ୍ତ କରିବାକୁ ସ୍ଥିର ହେଲା ।

ଦଶହରା ପରେ ପରେ ଆକ୍ଟୋବର ୧୫ - ୧୬ ଦିନ ଦିଲ୍ଲୀ ଯାଇ ସାଂସଦ, କେନ୍ଦ୍ରମନ୍ତ୍ରୀ ଓ ପ୍ରଧାନମନ୍ତ୍ରୀଙ୍କୁ ଭେଟିବା ପାଇଁ ଏକ ପ୍ରତିନିଧି ମଣ୍ଡଳ ଗଠିତ ହେଲା ।

(୧) ହରିଶ୍ଚନ୍ଦ୍ର ବକ୍ସିପାତ୍ର (୨) ବସନ୍ତ କୁମାର ପାଣିଗ୍ରାହୀ, ଆବାହକ (୩) ବିପିନ ବିହାରୀ ରଥ - କାର୍ଯ୍ୟ ବ୍ୟସ୍ତତା ସତ୍ତ୍ୱେ ଯିବା ପାଇଁ ଅନୁରୋଧ କରାଗଲା (୪) ହରିହର ବାହିନୀପତି (୫) ସୁରେନ୍ଦ୍ରମୋହନ ପଣ୍ଡା (୬) ପତିତପାବନ ପ୍ରଧାନ (୭) କୈଳାସ ଆଚାର୍ଯ୍ୟ (୮) ଅରୁଣ ଶଙ୍କର ମିଶ୍ର ।

ଶ୍ରୀ ଅରୁଣ ଶଙ୍କର ମିଶ୍ର କ୍ଷୋଭ ପ୍ରକାଶ କରି କହିଲେ - ଗତ ବଜେଟ୍ ଅଧିବେଶନ ସମୟରେ ଓଡିଶାର କୌଣସି ସାଂସଦ ଲୋକ ସଭା କିମ୍ବା ରାଜ୍ୟ ସଭାରେ ଷଢ଼େଇକଳା-ଖରସୁଆଁର ଓଡିଶା ସହିତ ପୁନଃମିଶ୍ରଣ ଉପରେ ଆଲୋଚନା କରି ନାହାନ୍ତି । ତେଣୁ ଆଗାମୀ ଶୀତ ଅଧିବେଶନରେ ପାର୍ଲିଆମେଣ୍ଟରେ ଏ ସମ୍ପର୍କରେ ଆଲୋଚନା କରିବାକୁ ସାଂସଦମାନଙ୍କୁ ଅନୁରୋଧ କରାଯିବ ।

ସେ ପୁଣି ପ୍ରସ୍ତାବ ଦେଲେ - ଉଚ୍ଚ ନ୍ୟାୟଳୟ ଓ ସର୍ବୋଚ୍ଚ ନ୍ୟାୟାଳୟରେ ରିଟ୍ ପିଟିସନ୍ ପାଇଁ ରାଜ୍ୟର ବରିଷ୍ଠ ଆଡ୍‌ଭୋକେଟ୍ ଯଥା ବାରିଷ୍ଟର ଗୋବିନ୍ଦ ଦାସ, ବିପିନ ବିହାରୀ ରଥ ଓ ଗଙ୍ଗାଧର ରଥଙ୍କ ସହାୟତାରେ 'ମେମୋରାଣ୍ଡମ୍' ପ୍ରସ୍ତୁତ ହେଉ । ଦେଶୀୟ ରାଜ୍ୟ ମିଶ୍ରଣ ଦଲିଲ୍ ଅନୁଯାୟୀ ଷଢ଼େଇକଳା-ଖରସୁଆଁ ଦୁଇ ଓଡିଆ ଦେଶୀୟ ରାଜ୍ୟ ନୂତନ ପ୍ରସ୍ତାବିତ ବନାଞ୍ଚଳ ରାଜ୍ୟରେ ରହିବା ଆଇନ୍ ଓ ସମ୍ବିଧାନ ସମ୍ମତ ନୁହେଁ ।

ଶ୍ରୀ ହରିହର ବାହିନୀପତି ଏହି ମତ ସହ ନିଜର ସମର୍ଥନ ଦେବା ସଙ୍ଗେ ସଙ୍ଗେ ମାଲି ମକଦ୍ଦମା ଅପେକ୍ଷା କେନ୍ଦ୍ର ମନ୍ତ୍ରୀ, ସାଂସଦ ଓ ରାଜ୍ୟ ସରକାରଙ୍କୁ ଭେଟି ଏ ଦିଗରେ 'ଲବି' କରାଯିବା ଉପରେ ଅଧିକ ଗୁରୁତ୍ୱ ଦେଇଥିଲେ ।

ଆଚାର୍ଯ୍ୟ ଭାବାନନ୍ଦ ଶ୍ରୀ ଅରୁଣ ଶଙ୍କର ମିଶ୍ରଙ୍କ ପ୍ରସ୍ତାବିତ 'ବିଚାର ବିଭାଗୀୟ

ରଣନୀତି' ସ୍ଥିର କରିବା ପାଇଁ ତ୍ରିଠା କମିଟି ଗଠନ ପାଇଁ ଦୃଢ଼ମତ ଦେଇଥିଲେ ।

'ଉତ୍ତରାଞ୍ଚଳ ରାଜ୍ୟ' ଗଠନ ସମୟରେ ଉତ୍ତର ପ୍ରଦେଶରେ ଥିବା ଉଦ୍ଧାମ ସିଂହ ନଗର ଜିଲ୍ଲାକୁ ତହିଁରୁ ବାଦ୍ ଦେଇ ମୂଳ ରାଜ୍ୟରେ ରଖି ବାକି ପଞ୍ଜାବରେ ମିଶ୍ରଣ ଦାବୀ ସହ ଷଢ଼େଇକଳା-ଖରସୁଆଁ ଅଞ୍ଚଳକୁ ବନାଞ୍ଚଳ ରାଜ୍ୟରେ ନ ରଖି ଓଡିଶାରେ ମିଶାଇବା ଦାବୀର ସାମଞ୍ଜସ୍ୟ ଓ ପ୍ରାସଙ୍ଗିକତା ଥିବା ଦୃଷ୍ଟିରୁ ସାଂପ୍ରତିକ ଐତିହାସିକ ମୁହୂର୍ତ୍ତର ଉଚିତ ସଦ୍ ବ୍ୟବହାର କରିବା ନିମନ୍ତେ ସଭ୍ୟମାନେ ମତ ଦେଇଥିଲେ ।

ବିସ୍ତାରିତ ଆଲୋଚନା ପରେ ଉପର୍ଯ୍ୟୁକ୍ତ କମିଟି ଦ୍ୱୟ (କ- ମାନପତ୍ର ପ୍ରସ୍ତୁତି କମିଟି ଓ ଖ- ଦିଲ୍ଲୀ ଯିବା ପାଇଁ ପ୍ରତିନିଧି ମଣ୍ଡଳ) ଗଠିତ ହୋଇଥିଲା ।

ଏ ସମସ୍ତ କାର୍ଯ୍ୟ ସମ୍ପାଦନ ପାଇଁ ପାଣ୍ଠି ସଂଗ୍ରହ କରିବା ଉପରେ ଗୁରୁତ୍ୱ ଦିଆଯାଇ ପ୍ରସ୍ତାବ ଗୃହୀତ ହେଲା ।

<u>ବାର୍ଷିକ ଅଧିବେଶନ</u>

ତାଳଚେରଠାରେ ଆଗାମୀ ୧୨ ଓ ୧୩ ଡିସେମ୍ବର ଦୁଇ ଦିନ ସମ୍ମିଳନୀର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେବା ପାଇଁ ବିସ୍ତାରିତ ଆଲୋଚନା ପରେ ପ୍ରସ୍ତାବ ଗୃହୀତ ହେଲା । ତାଳଚେରରୁ ଆସିଥିବା (ଏଥିପାଇଁ ଗଠିତ) ଅଭ୍ୟର୍ଥନା କମିଟିର ସଭ୍ୟମାନଙ୍କୁ ବାର୍ଷିକ ଅଧିବେଶନ ନିମନ୍ତେ ସବିଶେଷ ପ୍ରସ୍ତୁତି ପାଇଁ ଅନୁରୋଧ କରାଗଲା । ସମ୍ମିଳନୀ ଉପଲକ୍ଷେ ଏକ 'ସ୍ମରଣିକା' ପ୍ରକାଶ କରିବା ପାଇଁ ସ୍ଥିର ହେଲା । ସମ୍ମିଳନୀରେ ଯୋଗ ଦେବା ପାଇଁ ସାଂସଦ, ବିଧାୟକ ଓ ନେତୃବୃନ୍ଦକୁ ନିମନ୍ତ୍ରଣ କରିବା ନିମନ୍ତେ ସ୍ଥିର ହେଲା ।

କୋଷାଧ୍ୟକ୍ଷ ୧୯୯୪-୯୫ (ଜାନୁଆରୀ ୮ ରୁ ମାର୍ଚ୍ଚ ୩୧ ପର୍ଯ୍ୟନ୍ତ), ୧୯୯୫-୯୬, ୧୯୯୬-୯୭ ଓ ୧୯୯୭-୯୮ ବର୍ଷର ସମୀକ୍ଷା ରିପୋର୍ଟ ଉପସ୍ଥାପନ କରିଥିଲେ । ଭୁବନେଶ୍ୱରସ୍ଥ କେନ୍ଦ୍ର କାର୍ଯ୍ୟାଳୟ ମାଧ୍ୟମରେ ହୋଇଥିବା ଆୟ ବ୍ୟୟକୁ ଭିତ୍ତି କରି ଏହି ସମୀକ୍ଷା ରିପୋର୍ଟ ସମୀକ୍ଷକ ପ୍ରସ୍ତୁତ କରିଛନ୍ତି । ଏଥିସହ ମହାସଚିବ ବ୍ରହ୍ମପୁରଠାରେ ଖୋଲାଯାଇଥିବା ସଞ୍ଚୟ ଓ ଡିପୋଜିଟ୍ ହିସାବକୁ ଯୋଗକରି ସମ୍ମିଳନୀର ପୂର୍ଣ୍ଣାଙ୍ଗ ଅଡିଟ୍ ରିପୋର୍ଟ ପ୍ରସ୍ତୁତ ଉପରେ ଗୁରୁତ୍ୱ ଦେଇଥିଲେ; ତାହା ଗୃହୀତ ହୋଇଥିଲା । ଆଗାମୀ ବାର୍ଷିକ ଅଧିବେଶନ ପୂର୍ବରୁ ଏହା ସମ୍ପୂର୍ଣ୍ଣ ହେବା ପାଇଁ ସ୍ଥିର ହେଲା । ସମୀକ୍ଷକଙ୍କ ଉଚିତ ପାରିଶ୍ରମିକ ଦେବାକୁ ନିଷ୍ପତ୍ତି ନିଆଗଲା । ଅନ୍ୟ ଦିଗରୁ ଦାନ ବା ଅନୁଦାନ ଯଥେଷ୍ଟ ସଂଗ୍ରହ ହୋଇ ପାରୁ ନ ଥିବାରୁ ଆଜୀବନ ସଭ୍ୟଚାନ୍ଦା ଦୈନନ୍ଦିନ ଖର୍ଚ୍ଚରେ ବ୍ୟୟିତ ହେଉଥିବା ଉପଲବ୍ଧ କରାଗଲା । ଆଗକୁ ପାଣ୍ଠି ସଂଗ୍ରହ ଅଭିଯାନ କରାଯିବା ପାଇଁ ସ୍ଥିର ହେଲା । ଆପାତତଃ ପାଞ୍ଚ ହଜାର ଟଙ୍କା ସ୍ଥାୟୀ ଜମା କରାଯିବା ପାଇଁ ନିଷ୍ପତ୍ତି ଗ୍ରହଣ କରାଗଲା । କାର୍ଯ୍ୟକାରୀ ସମିତି ସଭ୍ୟମାନେ ସମ୍ମିଳନୀ ପାଣ୍ଠିକୁ ଦାନ କରି ଆର୍ଥିକ ଅଭାବ ଦୂର କରିବା

ନିମନ୍ତେ ଶ୍ରୀ ବିପିନ ବିହାରୀ ରଥଙ୍କ ପ୍ରସ୍ତାବ କ୍ରମେ ଅନୁରୋଧ କରାଗଲା ।

ପାଣ୍ଠି ସଂଗ୍ରହ ପାଇଁ କୋଷାଧକ୍ଷ ଟଙ୍କିକିଆ, ଦୁଇ ଟଙ୍କିଆ, ପାଞ୍ଚ ଟଙ୍କିଆ ଓ ଦଶ ଟଙ୍କିଆ କୁପନ ମୁଦ୍ରଣ କରି ଦୁଇ ଜଣ ସଭ୍ୟ ଶ୍ରୀ ପଦ୍ମଚରଣ ପଟ୍ଟନାୟକ (ଭୁବନେଶ୍ୱର ଶାଖା ସଭାପତି) ଓ ଶ୍ରୀମତୀ କାନନବାଳା ମହାନ୍ତି (ଭୁବନେଶ୍ୱର ଶାଖା କୋଷାଧକ୍ଷା) ଙ୍କ ଦ୍ୱାରା ମୁଖ୍ୟତଃ ସର୍ବସାଧାରଣରୁ ଭୁବନେଶ୍ୱରରେ ଅର୍ଥ ସଂଗ୍ରହ କରାଯାଉଛି । ଏ ସମ୍ପର୍କରେ ସବିଶେଷ ଆଲୋଚନା କରାଯାଇ ସ୍ଥିର ହେଲା ଯେ ଏହି ମୁଦ୍ରିତ କୁପନରେ ଏ ଯାବତ୍ ଯାହା ଅର୍ଥ ସଂଗ୍ରହ କରାଯାଇଛି ଏବଂ କେତେ କୁପନ୍ ମୁଦ୍ରିତ ହୋଇଛି ତାହାର ହିସାବ ଆଗାମୀ ବୈଠକରେ ପେଶ୍ କରାଯିବ ଏବଂ କୁପନରେ ଅର୍ଥ ସଂଗ୍ରହ ବନ୍ଦ କରାଯାଇ ରସିଦ୍ ବହିରେ ଦାନ ସଂଗ୍ରହ କରାଯିବାକୁ ସ୍ଥିର ହେଲା ।

ଜଣେ ଆଜୀବନ ସଭ୍ୟ (ଶ୍ରୀ ବିଧାନ ଚୌଧୁରୀ) ଗଜପତି ଜିଲ୍ଲାରେ କେତେ ଜଣଙ୍କଠାରୁ ଆଜୀବନ ସଭ୍ୟ ଚାନ୍ଦା ବିବିଧ ରସିଦ୍ ବହିରେ ଆଦାୟ କରିଥିବା ମହାସଚିବ ପ୍ରକାଶ କରିଥିଲେ । ଏ ସମ୍ପର୍କରେ ସମ୍ପୃକ୍ତ ଚାନ୍ଦା ଆଦାୟକାରୀ ସଭ୍ୟଙ୍କୁ ପତ୍ର ଲେଖି ପ୍ରକୃତ ଘଟଣା ଜଣାଇବା ପାଇଁ ଅନୁରୋଧ କରାଯିବ ବୋଲି ସ୍ଥିର ହେଲା । ଯଦି ଆଜୀବନ ସଭ୍ୟ ହେବା ପାଇଁ ଚାନ୍ଦା ଆଦାୟ କରାଯାଇଥିବ, ତେବେ ସେମାନଙ୍କୁ ଆଜୀବନ ସଭ୍ୟ ରୂପେ ଗ୍ରହଣ କରାଯିବାକୁ ସ୍ଥିର ହେଲା ।

ଲୋକ ସେବକ ମଣ୍ଡଳ ତଥା 'ସମାଜ' ଅନୁଷ୍ଠାନ ଦ୍ୱାରା ସ୍ୱର୍ଗତ ରାଧାନାଥ ରଥ (ସମ୍ମିଳନୀର ପୂର୍ବତନ ସଭାପତି) ଙ୍କ ଅଧ୍ୟକ୍ଷତାରେ ଗଠିତ 'ଉତ୍କଳ ସମ୍ମିଳନୀ ଡେଭେଲପ୍‌ମେଣ୍ଟ୍ ଟ୍ରଷ୍ଟ'ରୁ ବାର୍ଷିକ ଅନୁଦାନ ପ୍ରାପ୍ତି ଓ ଆୟ ବ୍ୟୟ ସମ୍ପର୍କରେ ଆଲୋଚନା କରାଯାଇ ବର୍ତ୍ତମାନର ଟ୍ରଷ୍ଟ କର୍ତ୍ତୃପକ୍ଷଙ୍କୁ ଏ ସମ୍ପର୍କରେ ପତ୍ର ଲେଖିବାକୁ ସ୍ଥିର ହେଲା ।

ଉତ୍କଳ ଗୌରବ ମଧୁସୂଦନ ଦାସଙ୍କର ଜନ୍ମ ଦେଢ଼ ଶହ ବର୍ଷ ପୂର୍ତ୍ତି ଅବସରରେ ଏକ ବର୍ଷବ୍ୟାପୀ ଜୟନ୍ତୀ ଉତ୍ସବ ପାଳନ ସମ୍ପର୍କରେ ଆଲୋଚନା କରାଯାଇ ନିମ୍ନ ପ୍ରସ୍ତାବମାନ ଗୃହୀତ ହେଲା ।

୧- ରାଜ୍ୟର ହଜାରଟି ହାଇସ୍କୁଲରେ ପ୍ରଧାନ ଶିକ୍ଷକଙ୍କ ଅଧ୍ୟକ୍ଷତାରେ ଜୟନ୍ତୀ ପାଳନ କମିଟି ଗଠନ କରାଯାଇ ଏହି ଜୟନ୍ତୀ ପାଳନ କାର୍ଯ୍ୟକ୍ରମ ବିଧିବଦ୍ଧ ଭାବେ କାର୍ଯ୍ୟକାରୀ କରାଯିବ । ଏଥି ନିମନ୍ତେ ସ୍କୁଲ ବିଭାଗୀୟ ନିର୍ଦ୍ଦେଶଙ୍କୁ ପତ୍ର ଲେଖି ଏବଂ ପ୍ରତ୍ୟକ୍ଷ ସମ୍ପର୍କ ରକ୍ଷା କରି ଏହି ଲକ୍ଷ୍ୟ ପୂରଣ ନିମନ୍ତେ ପଦକ୍ଷେପ ନିଆଯିବ ।

୨- ଚାରି-ପାଞ୍ଚ ହଜାର (ମଧୁବାବୁଙ୍କ) ପ୍ରତିଛବି ମୁଦ୍ରଣ କରାଯାଇ ବଣ୍ଟନ ଓ ବିକ୍ରୟ ବ୍ୟବସ୍ଥା ହେବ । ଏଥିପାଇଁ ମହାସଚିବ, ମଧୁବାବୁଙ୍କର ୧୦୦୦ ଖଣ୍ଡ ପ୍ରତିଛବି ପ୍ରସ୍ତୁତକରି ଯୋଗାଇଦେବେ ଏବଂ ପ୍ରତିଖଣ୍ଡ ୫ ଟଙ୍କାରେ ବିକ୍ରି କରାଯିବାପାଇଁ ସ୍ଥିରହେଲା ।

(ଖ) ଅବଶିଷ୍ଟ ଫଟୋ ପାଇଁ ଡ: ବଂଶୀଧର ପଣ୍ଡା ଓ ଶ୍ରୀମତୀ ଇଳା ପଣ୍ଡାଙ୍କ ସହ ସାକ୍ଷାତ ଆଲୋଚନା କରିବା ପାଇଁ ସ୍ଥିର ହେଲା ।

୩ - ମଧୁବାବୁ ଓ ପାରଳା ଗଜପତିଙ୍କର ପ୍ରତିମୂର୍ତ୍ତି ରାଜଧାନୀ-ଭୁବନେଶ୍ୱରର କେନ୍ଦ୍ର ସ୍ଥାନରେ ସ୍ଥାପନପାଇଁ ସରକାରଙ୍କୁ ଲେଖାଯିବ ଏବଂ ଏଥିପାଇଁ ଉଦ୍ୟମ ଜାରୀ ରହିବ ।

ମଧୁ ଜୟନ୍ତୀ ପାଳନ ସମ୍ପର୍କରେ ଖବର କାଗଜମାନଙ୍କରେ 'ସଂପାଦକଙ୍କୁ ପତ୍ର' ସ୍ତମ୍ଭରେ ପ୍ରଚାର କରାଯିବା ଓ ବିଜ୍ଞାପନ ଦେବା ପାଇଁ ସ୍ଥିର ହେଲା ।

ରାଜ୍ୟ ସୀମାନ୍ତରେ ବିବାଦୀୟ ଗ୍ରାମ ରୂପେ ଅବିହିତ ଅଞ୍ଚଳ ସମ୍ପର୍କରେ ରାଜସ୍ୱ ମନ୍ତ୍ରୀଙ୍କୁ ଲେଖାଯାଇଛି ଏବଂ ସମ୍ମିଳନୀ ତରଫରୁ କେତେକ ସ୍ଥଳରେ ସରଜମିନ୍ ପରିଦର୍ଶନକରି ସେହି ଗ୍ରାମଗୁଡିକର ପ୍ରକୃତ ସ୍ଥିତି ସମ୍ପର୍କରେ ଅନୁଧ୍ୟାନ କରାଯାଇଛି ବୋଲି ମହାସଚିବ କହିଲେ ।

କ୍ରମେ କ୍ରମେ ଜିଲ୍ଲା ଶାଖା ଏବଂ ସହରାଞ୍ଚଳ ତଥା ଶିଳ୍ପାଞ୍ଚଳରେ ସମ୍ମିଳନୀର ଶାଖାମାନ ଗଠିତ ହେଉଥିବାରୁ ସେଗୁଡିକର ଆୟ ବ୍ୟୟ ହିସାବ ସମ୍ପର୍କରେ ଆଲୋଚନା କରାଗଲା । ଶାଖା ତରଫରୁ ସଂଗୃହୀତ ଆଜୀବନ ସଭ୍ୟ ଚାନ୍ଦା ଓ ସଭ୍ୟ ଚାନ୍ଦା କେନ୍ଦ୍ର କାର୍ଯ୍ୟାଳୟ ପାଣ୍ଠିରେ ପଇଠ କରାଯିବ ଏବଂ ଯେଉଁ ଦାନ ବା ଅନୁଦାନ ସ୍ୱତନ୍ତ୍ର ଭାବେ ଆଦାୟ କରିବେ, ତାହା ଶାଖାମାନଙ୍କ ପାଣ୍ଠିରେ ରହିବ । ସେଥିରୁ ସେମାନେ ଖର୍ଚ୍ଚ କରିବେ । ବର୍ଷ ଶେଷରେ ଶାଖାମାନେ ସେମାନଙ୍କର ଆୟ ବ୍ୟୟ ହିସାବ ସମୀକ୍ଷା କରି ସମୀକ୍ଷା ବିବରଣୀ (ଅଡିଟ୍ ରିପୋର୍ଟ) କେନ୍ଦ୍ର କାର୍ଯ୍ୟାଳୟକୁ ପଠାଇବେ ବୋଲି ସ୍ଥିର ହେଲା ।

ସମ୍ବିଧାନ ସଂଶୋଧନ ନିମନ୍ତେ ନିମ୍ନଲିଖିତ ସଭ୍ୟମାନଙ୍କୁ ନେଇ ଏକ ସମ୍ବିଧାନ ସଂଶୋଧନ କମିଟି ଗଠିତ ହେଲା ।

ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ, ଶ୍ରୀ ଆଚାର୍ଯ୍ୟ ଭାବାନନ୍ଦ, ଶ୍ରୀ ପଦ୍ମଚରଣ ନାୟକ, ଶ୍ରୀ ଶ୍ରୀଚରଣ ସ୍ୱାଇଁ ଓ ଶ୍ରୀ ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ଆବାହକ ।

ଶାଖାମାନଙ୍କୁ ଲୋଖାଯିବ; ସେମାନେ ଆଗାମୀ ନଭେମ୍ବର ପହିଲା ମଧ୍ୟରେ ସଂଶୋଧନ ପ୍ରସ୍ତାବମାନ କେନ୍ଦ୍ର କାର୍ଯ୍ୟାଳୟକୁ ପଠାଇବେ ।

'ଉତ୍କଳ ସମ୍ମିଳନୀ ସମାଚାର' ପଞ୍ଚମ ସଂଖ୍ୟା (ଦଶହରା ସଂଖ୍ୟା) ଭାବେ ଆଗାମୀ ଅକ୍ଟୋବର ଶେଷ ସୁଦ୍ଧା ପ୍ରକାଶ କରାଯିବାକୁ ସ୍ଥିର ହେଲା ।

କେନ୍ଦ୍ର କାର୍ଯ୍ୟାଳୟରେ କରାଯାଇଥିବା 'ଗ୍ରନ୍ଥାଗାର' ପାଇଁ ପୁସ୍ତକ ଦେବା ନିମନ୍ତେ ଲେଖକ, ପ୍ରକାଶକ ଓ ପ୍ରକାଶନ ସଂସ୍ଥାକୁ ଅନୁରୋଧ କରାଯିବାକୁ ସ୍ଥିର ହେଲା ।

'ଓଡିଆ ଅଧ୍ୟୟନ କେନ୍ଦ୍ର' ମାଧ୍ୟମରେ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ହୋଟେଲ ମ୍ୟାନେଜ୍‌ମେଣ୍ଟ ଏବଂ ଉତ୍କଳ ସମ୍ମିଳନୀ ମିଳିତ ଆନୁକୂଲ୍ୟରେ ଏକ ସ୍ୱଳ୍ପ ମିଆଦୀ ଓଡିଆ ଖାଦ୍ୟ ପ୍ରସ୍ତୁତି

ତାଲିମ ବ୍ୟବସ୍ଥା କାର୍ଯ୍ୟକାରୀ ହେବ ବୋଲି କେନ୍ଦ୍ର ନିର୍ଦ୍ଦେଶକ ଡକ୍ଟର ଅରବିନ୍ଦ ପଟ୍ଟନାୟକ ପ୍ରକାଶ କରିଥିଲେ ।

ଅଣ ଓଡିଆ ଓ ବିଦେଶୀମାନଙ୍କପାଇଁ ଓଡିଆ ପାଠ୍ୟକ୍ରମ ଛାତ୍ରାଭାବରୁ ବିଳମ୍ବିତ ହେଉଛି । ଏଥିନିମନ୍ତେ ଖବରକାଗଜରେ ଏକ ସମ୍ବାଦ-ବିଜ୍ଞାପନ ଦେବାକୁ ନିଷ୍ପତ୍ତି ନିଆଗଲା । କେନ୍ଦ୍ର ମାନବ ସମ୍ବଳ ମନ୍ତ୍ରଣାଳୟ, କଲ୍ୟାଣ ମନ୍ତ୍ରଣାଳୟ, ରାଜ୍ୟ ସଂସ୍କୃତି, ଶିକ୍ଷା ଓ କଲ୍ୟାଣ ବିଭାଗମାନଙ୍କ ଦ୍ୱାରା ଓଡିଶା ଓ ଓଡିଆ ସମ୍ପର୍କୀୟ ଗବେଷଣା ପରିଯୋଜନା ଓଡିଆ ଅଧ୍ୟୟନ କେନ୍ଦ୍ର ମାଧ୍ୟମରେ କରାଯିବା ପାଇଁ ସ୍ଥିର ହେଲା ।

'ଓଡିଆ ଭାଷା ବିଶେଷଜ୍ଞ କମିଟି ତରଫରୁ ଆଗାମୀ ୨୦-୯-୯୮ ରବିବାର ଦିନ 'ଓଡିଆ ଭାଷାର ଶୁଦ୍ଧି ବ୍ୟବହାରରେ ସମ୍ବାଦପତ୍ରର ଭୂମିକା' ଉପରେ ଆଲୋଚନାଚକ୍ର ହେବା ପ୍ରସ୍ତାବ ଅନୁମୋଦନ କରାଗଲା । ଆଗକୁ ଅକ୍ଟୋବର-ନଭେମ୍ବରରେ ବଡ ଧରଣର ଏକ ଆଲୋଚନାଚକ୍ର ଓଡିଆ ଭାଷାର ଶୁଦ୍ଧ ବ୍ୟବହାର ଏବଂ ସୁରକ୍ଷା ଉପରେ କରାଯିବା ପାଇଁ ନିଷ୍ପତ୍ତି ନିଆଗଲା ।

ବାର୍ଷିକ ଅଧିବେଶନ ଆଗାମୀ ଡିସେମ୍ବର ୧୨ ଓ ୧୩ ରେ ତାଳଚେରଠାରେ ଅନୁଷ୍ଠିତ ହେଉଥିବାରୁ ତାହା ପୂର୍ବରୁ ଆଗାମୀ ସାଧାରଣ ପରିଷଦ ଗଠନ ପାଇଁ ସଭ୍ୟ ନିର୍ବାଚନ ସମ୍ପର୍କରେ ବିହିତ କାର୍ଯ୍ୟାନୁଷ୍ଠାନ ପାଇଁ ନିଷ୍ପତ୍ତି ନିଆଗଲା ।

ଆଜୀବନ ସଭ୍ୟମାନଙ୍କ ପାଇଁ ସେମାନଙ୍କଠାରୁ ଆବଶ୍ୟକ ଖର୍ଚ୍ଚ ଆଦାୟ ହୋଇ ପରିଚୟପତ୍ର ପ୍ରସ୍ତୁତ କରି ପ୍ରଦାନ କରାଯିବା ନିମନ୍ତେ ପ୍ରସ୍ତାବ ଗୃହୀତ ହେଲା ।

କେନ୍ଦ୍ର କାର୍ଯ୍ୟାଳୟରେ ଏକ 'ପେ-ଫୋନ୍' ଲାଗାଇବା ପାଇଁ ସଭ୍ୟା ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର ପଦକ୍ଷେପ ନେବାକୁ ଅନୁରୋଧ କରାଗଲା ।

ପରିଶେଷରେ ସଭାପତିଙ୍କୁ ଧନ୍ୟବାଦ ଅର୍ପଣ କରାଯାଇ ସଭା ସାଙ୍ଗ ହେଲା ।

| | | |
|---|---|---|
| ଗୋପାଳକୃଷ୍ଣ ଶ୍ରୀଚନ୍ଦନ | ବସନ୍ତ କୁମାର ପାଣିଗ୍ରାହୀ | ହରିଶ୍ଚନ୍ଦ୍ର ବକ୍ସିପାତ୍ର |
| ସଚିବ | ମହାସଚିବ | ସଭାପତି |

## ତା-୮-୧୧-୯୮ ରବିବାର ପୂର୍ବାହ୍ନ ସାଢ଼େ ନଅ ଘଣ୍ଟା ସମୟରେ ଝାରସୁଗୁଡାଠାରେ ଅନୁଷ୍ଠିତ କାର୍ଯ୍ୟକାରୀ ସମିତି ବୈଠକ ବିବରଣୀ

**ଉପସ୍ଥିତ ସଭ୍ୟ :**

(୧) ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର (୨) ଇଂ ଅମରେନ୍ଦ୍ର କୁମାର ଦାସ (୩) ଶ୍ରୀ ବସନ୍ତ କୁମାର

ପାଣିଗ୍ରାହୀ (୪) ଶ୍ରୀମତୀ ମନୋରମା ମହାପାତ୍ର (୫) ଶ୍ରୀ ଆଚାର୍ଯ୍ୟ ଭାବାନନ୍ଦ (୬) ଶ୍ରୀ କିଶୋରଚନ୍ଦ୍ର ତ୍ରିପାଠୀ (୭) ଶ୍ରୀ ବିଚିତ୍ରାନନ୍ଦ ସାହୁ (୮) ଶ୍ରୀ କୈଳାସ ଆଚାର୍ଯ୍ୟ (୯) ଶ୍ରୀମତୀ କାନନବାଳା ମହାନ୍ତି (୧୦) ଶ୍ରୀ ଗୋପାଳକୃଷ୍ଣ ଶ୍ରୀଚନ୍ଦନ ।

ଭାରପ୍ରାପ୍ତ ସଭାପତି ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ସଭାପତିତ୍ୱରେ ବୈଠକ ଅନୁଷ୍ଠିତ ହୋଇଥିଲା ।

ଗତ ୧୨-୯-୯୮ ରେ ଅନୁଷ୍ଠିତ ବୈଠକ ବିବରଣୀ ପାଠ କରାଯାଇ ଠିକ୍ ଥିବାରୁ ଦୃଢ଼ୀକୃତ ହେଲା ଏବଂ ତହିଁରେ ଗୃହୀତ ପ୍ରସ୍ତାବଗୁଡ଼ିକର କାର୍ଯ୍ୟକାରିତା ଉପରେ ସମୀକ୍ଷା କରାଗଲା ।

ବିହାରରୁ ଅଲଗା ହୋଇ 'ବନାଞ୍ଚଳ ରାଜ୍ୟ' ଗଠନ ପ୍ରସ୍ତାବ ପରିପ୍ରେକ୍ଷୀରେ ଷଢ଼େଇକଳା-ଖରସୁଆଁକୁ ଓଡ଼ିଶାକୁ ପୁଣି ଫେରାଇ ଦେବା ସମ୍ପର୍କରେ ଗଠିତ ପ୍ରତିନିଧି ମଣ୍ଡଳୀ ଦିଲ୍ଲୀ ଯାଇ ରାଷ୍ଟ୍ରପତି ଓ ପ୍ରଧାନମନ୍ତ୍ରୀଙ୍କୁ ସ୍ମାରକପତ୍ର ଦେବା ପ୍ରସ୍ତାବରେ କାର୍ଯ୍ୟକାରିତା ଉପରେ ଆଲୋଚନା ହୋଇଥିଲା । କେବଳ ମହାସଚିବ ଦିଲ୍ଲୀ ଯାଇ ଏକ ସ୍ମାରକପତ୍ର ପ୍ରଧାନମନ୍ତ୍ରୀ ଦପ୍ତରରେ ଦେଇଛନ୍ତି ଏବଂ ପ୍ରଧାନମନ୍ତ୍ରୀଙ୍କ କାର୍ଯ୍ୟାଳୟ ସ୍ୱରାଷ୍ଟ୍ର ବ୍ୟାପାର ମନ୍ତ୍ରଣାଳୟକୁ ବିଚାର ନିମନ୍ତେ ଏହି ସ୍ମାରକପତ୍ର ପଠାଇ ଦେଇଥିବା ସମ୍ପର୍କୀୟ ପତ୍ର ହସ୍ତଗତ ହୋଇଛି ବୋଲି କହି ମହାସଚିବ ପତ୍ରଟି ଦେଖାଇଥିଲେ । ଏହି ସ୍ମାରକପତ୍ର ଉପରେ ପୁନଃ ବିଚାର ବିମର୍ଶ କରିବା ପାଇଁ ସ୍ମାରକ ପତ୍ର ପ୍ରସ୍ତୁତି କମିଟିର ଏକ ବୈଠକ ପୁନରାୟ ବସିବା ପାଇଁ ସ୍ଥିର ହେଲା । ନଭେମ୍ବର ୨୫ ବେଳକୁ ଏହି ବୈଠକ ଆହୂତ ହେବାକୁ ନିଷ୍ପତ୍ତି ନିଆଗଲା ।

ରାଜ୍ୟର ଉପାନ୍ତ ଅଞ୍ଚଳର ବିବଦମାନ ଗ୍ରାମଗୁଡ଼ିକ ସମ୍ପର୍କରେ ଆଲୋଚନା କରାଯାଇ ରାଜ୍ୟ ସରକାରଙ୍କୁ ଉପାନ୍ତ ଅଞ୍ଚଳର ସମ୍ପୃକ୍ତ ଜିଲ୍ଲାମାନଙ୍କରେ, ଏବଂ ରାଜ୍ୟସ୍ତରରେ ଏ ସମ୍ପର୍କରେ ମଧ୍ୟେ ମଧ୍ୟେ ସମୀକ୍ଷା କରିବା ପାଇଁ ସ୍ଥାୟୀ କମିଟିମାନ ଗଠନ କରିବା ପାଇଁ ଅନୁରୋଧ କରାଯିବ ବୋଲି ସ୍ଥିର ହେଲା । ଏହି ସ୍ଥାୟୀ କମିଟି ଗୁଡ଼ିକରେ ଉତ୍କଳ ସମ୍ମିଳନୀର ପ୍ରତିନିଧିଙ୍କୁ ଗ୍ରହଣ କରି ଆଲୋଚନାରେ ଭାଗ ନେବାକୁ ସୁଯୋଗ ଦେବା ନିମନ୍ତେ ରାଜ୍ୟ ସରକାରଙ୍କୁ ଅନୁରୋଧ କରାଯିବାକୁ ନିଷ୍ପତ୍ତି ନିଆଗଲା ।

ସୀମାନ୍ତ ଅଞ୍ଚଳରେ ବସବାସ କରୁଥିବା ଅଦିବାସୀମାନଙ୍କର ଜମି ପଡୋଶୀ ରାଜ୍ୟର ଅଧିବାସୀମାନଙ୍କ ହାତକୁ ଚାଲି ଯାଉଥିବା ହେତୁ ଉଦ୍‌ବେଗ ପ୍ରକାଶ କରାଗଲା । ପଡୋଶୀ ମଧ୍ୟ ପ୍ରଦେଶରେ ଆଦିବାସୀ ଓ ଦଳିତ ଭାବେ ସ୍ୱୀକୃତ ଜାତି ଓଡ଼ିଶାରେ ଆଦିବାସୀ ବା ଦଳିତ ଭାବେ ସ୍ୱୀକୃତି ପାଉ ନ ଥିବାରୁ ସମ୍ବିଧାନ ପ୍ରଦତ୍ତ ସୁବିଧା ସୁଯୋଗରୁ ବଞ୍ଚିତ ହେଉଛନ୍ତି । ଅନ୍ୟ ରାଜ୍ୟର ଆଦିବାସୀ ଓଡ଼ିଶାର ଆଦିବାସୀମାନଙ୍କଠାରୁ ଜମି କିଣି ପାରିବେ ନାହିଁ; ଏ ସମ୍ପର୍କରେ ଅନୁଧ୍ୟାନ କରି ପ୍ରକୃତ ସ୍ଥିତି ଜାଣି ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ ପାଇଁ ସ୍ଥିର ହେଲା ।

ବୈଠକରେ ଉପସ୍ଥିତ ସଭ୍ୟା ଶ୍ରୀମତୀ ମନୋରମା ମହାପାତ୍ର ଓ ସଭ୍ୟ ଶ୍ରୀ କିଶୋର ଚନ୍ଦ୍ର ତ୍ରିପାଠୀ ଉତ୍କଳ ସମ୍ମିଳନୀର ଆର୍ଥିକ ସ୍ଥିତି ସମ୍ପର୍କରେ ଜାଣିବାକୁ ଆଗ୍ରହ ପ୍ରକାଶ କରିଥିଲେ । ଏହି ପ୍ରସଙ୍ଗରେ ଆଲୋଚନା ଅବସରରେ 'ଉତ୍କଳ ସମ୍ମିଳନୀ ବିକାଶ ନ୍ୟାସ ପାଣ୍ଠି' ରେ ଏକ ଲକ୍ଷ ଟଙ୍କା ଜମାଥିବା ସମ୍ପର୍କରେ ଉପସ୍ଥିତ ସଭ୍ୟମାନେ ଜାଣିବାକୁ ଚାହିଁ ଥିଲେ । ଏହି ଟ୍ରଷ୍ଟ ଫଂଣ୍ଡର ଅଧ୍ୟକ୍ଷ ଭାବେ ଲୋକସେବକ ମଣ୍ଡଳର ଅଧ୍ୟକ୍ଷ ରହିବା ବ୍ୟବସ୍ଥା ଥିବାରୁ ଡକ୍ଟର ରାଧାନାଥ ରଥଙ୍କ ଦେହାନ୍ତ ପରେ ବର୍ତ୍ତମାନ ଲୋକସେବକ ମଣ୍ଡଳ ଓଡିଶା ଶାଖାର ଅଧ୍ୟକ୍ଷ ଏହି ନ୍ୟାସ ପାଣ୍ଠିର ଅଧ୍ୟକ୍ଷ ଥିବା ଜଣା ପଡିଥିଲା । ଏଥିରେ ଉତ୍କଳ ସମ୍ମିଳନୀର ମହାସଚିବ ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ, କୋଷାଧ୍ୟକ୍ଷ ଥିବା ପ୍ରକାଶ କରିଥିଲେ । ଉଭୟ ଶ୍ରୀମତୀ ମନୋରମା ମହାପାତ୍ର ଓ ଶ୍ରୀ କିଶୋର ଚନ୍ଦ୍ର ତ୍ରିପାଠୀ ଏହି ନ୍ୟାସରେ ସଦସ୍ୟ ଥିବାରୁ ନ୍ୟାସ ପାଣ୍ଠିର ଅଧ୍ୟକ୍ଷଙ୍କ ପାଖକୁ ଏ ସମ୍ପର୍କରେ ପତ୍ର ଲେଖି ତାହାର ନକଲ ଏହି ଉଭୟ ସଦସ୍ୟଙ୍କୁ ଦେଲେ, ସେମାନେ ଏଥି ପ୍ରତି ଦୃଷ୍ଟି ଦେବେ ବୋଲି ପ୍ରତିଶ୍ରୁତି ଦେଲେ । ସେମାନେ ଏ ସମ୍ପର୍କରେ ଆଗ୍ରହ ପ୍ରକାଶ କରିଥିବାରୁ ଧନ୍ୟବାଦ ଜ୍ଞାପନ କରାଗଲା ।

ସମ୍ବିଧାନ ସଂଶୋଧନ କମିଟିର ବୈଠକ ନଭେମ୍ବର ମାସ ମଧ୍ୟରେ ଆହୂତ ହେବାକୁ ସ୍ଥିର ହେଲା । ଜିଲ୍ଲା ଶାଖାମାନେ ସମ୍ବିଧାନ ସଂଶୋଧନ ପାଇଁ ପ୍ରସ୍ତାବ ଦେବାକୁ ଚିଠି ଲେଖାଯିବ ବୋଲି ନିଷ୍ପତ୍ତି ନିଆଗଲା । ତାଳଚେରରେ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେବା ପୂର୍ବରୁ କାର୍ଯ୍ୟକାରୀ ସମିତିର ଏକ ବୈଠକ ବସିବ ବୋଲି ନିଷ୍ପତ୍ତି ନିଆଗଲା । ବାର୍ଷିକ ଅଧିବେଶନ ପୂର୍ବରୁ ସମସ୍ତ ଜିଲ୍ଲା ଶାଖା ଗଠନ ଏବଂ ସାଧାରଣ ପରିଷଦକୁ ଦଶ ଜଣ କରି ପ୍ରତ୍ୟେକ ଜିଲ୍ଲାରୁ ସଭ୍ୟ ନିର୍ବାଚନ ସମ୍ପର୍କରେ ଦାୟିତ୍ୱରେ ଥିବା ସଭ୍ୟମାନଙ୍କୁ ଚିଠି ଲେଖାଯିବାକୁ ସ୍ଥିର ହେଲା ।

୧୯୯୮ ନଭେମ୍ବର ୧୦ ତାରିଖ ସୁଦ୍ଧା ଆଜୀବନ ସଭ୍ୟ ହୋଇଥିବା ବ୍ୟକ୍ତିମାନଙ୍କର ନାମ, ଠିକଣା, ସଭ୍ୟ ଚାନ୍ଦା ଓ ମୁଣ୍ଡା ରସିଦ ପଠାଇବା ପାଇଁ ସମ୍ପୃକ୍ତ ଚାନ୍ଦା ଆଦାୟକାରୀ ସଭ୍ୟମାନଙ୍କୁ ଚିଠି ଲେଖିବାକୁ ସ୍ଥିର ହେଲା । ନଭେମ୍ବର ୨୫ ତାରିଖ ମଧ୍ୟରେ ଏହି ସଭ୍ୟ ତାଲିକା ପାଇଲେ, ଆଜୀବନ ସଭ୍ୟ ତାଲିକା (ପ୍ରତ୍ୟେକ ଜିଲ୍ଲାବାରି) ଚୂଡାନ୍ତ ହେବ ବୋଲି ନିଷ୍ପତ୍ତି ନିଆଗଲା । ବାର୍ଷିକ ଅଧିବେଶନ ପୂର୍ବରୁ ଏହି କାର୍ଯ୍ୟ ସଂପୂର୍ଣ୍ଣ କରିବା ସାଙ୍ଗକୁ ଆୟ ବ୍ୟୟ ଫର୍ଦ୍ଦ ଅଦ୍ୟତନ କରିବାକୁ ମହାସଚିବଙ୍କୁ ଅନୁରୋଧ କରାଗଲା ।

ପରିଶେଷରେ ସଭାପତିଙ୍କୁ ଧନ୍ୟବାଦ ଅର୍ପଣ କରାଯାଇ ସଭା ସାଙ୍ଗ ହେଲା ।

| | | |
|---|---|---|
| ଗୋପାଳକୃଷ୍ଣ ଶ୍ରୀଚନ୍ଦନ | ବସନ୍ତ କୁମାର ପାଣିଗ୍ରାହୀ | ହରିଶ୍ଚନ୍ଦ୍ର ବକ୍ସିପାତ୍ର |
| ସଚିବ | ମହାସଚିବ | ସଭାପତି |

## ତା-୬-୧୨-୯୮ ରବିବାର ପୂର୍ବାହ୍ନ ୧୦ ଘଣ୍ଟା ସମୟରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ କାର୍ଯ୍ୟକାରୀ ସମିତି ବୈଠକ ବିବରଣୀ

ଉପସ୍ଥିତ ସଭ୍ୟ :

(୧) ବସନ୍ତ କୁମାର ପାଣିଗ୍ରାହୀ (୨) ନୃସିଂହ ମଲ୍ଲ (୩) ସାତକଡି ହୋତା (୪) ଗୁରୁ ପ୍ରସାଦ ମହାନ୍ତି (୫) ସୁରେନ୍ଦ୍ରମୋହନ ପଣ୍ଡା (୬) ପଦ୍ମଚରଣ ନାୟକ (୭) ଅରୁଣ ଶଙ୍କର ମିଶ୍ର (୮) ଆଚାର୍ଯ୍ୟ ଭାବାନନ୍ଦ (୯) କାନନବାଲା ମହାନ୍ତି (୧୦) ଗୋପାଳକୃଷ୍ଣ ଶ୍ରୀଚନ୍ଦନ (୧୧) ଶ୍ରୀଚରଣ ସ୍ୱାଇଁ (୧୨) କୈଳାସ ଆଚାର୍ଯ୍ୟ (୧୩) ଅନ୍ନପୂର୍ଣ୍ଣା ମିଶ୍ର (୧୪) ଅରବିନ୍ଦ ପଟ୍ଟନାୟକ ।

ସଭାପତିଙ୍କ ଅନ୍ୟତ୍ର କାର୍ଯ୍ୟବ୍ୟସ୍ତତା ହେତୁ କାର୍ଯ୍ୟକାରୀ ସମିତି ସଭ୍ୟ ଶ୍ରୀ ସାତକଡି ହୋତାଙ୍କ ସଭାପତିତ୍ୱରେ ବୈଠକ ବସିଥିଲା ଏବଂ ପରେ ସଭାପତି ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ଯୋଗଦେଇ ସଭାପତିତ୍ୱ କରିଥିଲେ ।

ଗତ ୮-୧୧-୯୮ ର ବୈଠକ ବିବରଣୀ ପାଠ କରାଯାଇ ଠିକ୍ ଭାବେ ଲିପିବଦ୍ଧ ହୋଇ ଥିବାରୁ ଦୃଢ଼ୀକରଣ ପୂର୍ବକ ଗୃହୀତ ପ୍ରସ୍ତାବ ଗୁଡିକର କାର୍ଯ୍ୟକାରିତା ଉପରେ ସମୀକ୍ଷା କରାଯାଇଥିଲା ।

୧ - 'ଓଡିଶାକୁ ଷଢ଼େଇକଳା-ଖରସୁଆଁ ଫେରସ୍ତ' ସମ୍ପର୍କରେ ଆଲୋଚନା କରାଯାଇ ସ୍ଥିର ହେଲା, 'ସ୍ମାରକପତ୍ର କମିଟି' ଆଉଥରେ ଆହୂତ ହୋଇ 'ସ୍ମାରକପତ୍ର ଚୂଡାନ୍ତ' କରିବେ ।

ଶ୍ରୀ ବିଶ୍ୱନାଥ କର, ଖରସୁଆଁ ଯେଉଁ ଜନସ୍ୱାର୍ଥ ମାମଲା ସୁପ୍ରିମ୍ କୋର୍ଟରେ ଦାୟର କରିଛନ୍ତି, ସେଥିରେ ଉତ୍କଳ ସମ୍ମିଳନୀ 'ଇଣ୍ଟରଭେନର' ହେବେ ବୋଲି ସ୍ଥିର ହେଲା । ଏଥିପାଇଁ ଶ୍ରୀ କରଙ୍କଠାରୁ ଏ ସମ୍ପର୍କୀୟ କାଗଜପତ୍ର ଓ ନଥି ମଗାଯିବ ଏବଂ ତାହା ମିଳିବା ପରେ ପରବର୍ତ୍ତୀ ପଦକ୍ଷେପ ନିଆଯିବ । ଇତି ମଧ୍ୟରେ ମହାସଚିବ ରାଜ୍ୟ ଘରୋଇ ବିଭାଗ ଶାସନ ସଚିବଙ୍କ ସହ ସାକ୍ଷାତ କରି ଏ ବିଷୟରେ ଆଲୋଚନା କରିବେ । ଶ୍ରୀ ଅରୁଣ ଶଙ୍କର ମିଶ୍ର ଏହି ଜନସ୍ୱାର୍ଥ ମାମଲାରେ ନମ୍ବର ରାଜ୍ୟ କାର୍ଯ୍ୟାଳୟକୁ ଯୋଗାଇଦେବେ ।

୨ - ଶ୍ରୀ କୈଳାସ ଆଚାର୍ଯ୍ୟ ଉଦାମ ସିଂହ ନଗର ସମ୍ପର୍କରେ ଅକାଳୀଦଳ ଆସନ୍ତା ୨୨-୧୨-୯୮ ପାର୍ଲିଆମେଣ୍ଟ ପାଖରେ କରୁଥିବା ଧାରଣା ପ୍ରକାରେ ଷଢ଼େଇକଳା-ଖରସୁଆଁ ସମସ୍ୟା ନେଇ କେନ୍ଦ୍ର ସରକାର ତଥା ପାର୍ଲିଆମେଣ୍ଟଙ୍କ ଦୃଷ୍ଟି ଆକର୍ଷଣ ନିମନ୍ତେ ଓଡିଶାର ସାଂସଦମାନଙ୍କ ସହାୟତାରେ ଉତ୍କଳ ସମ୍ମିଳନୀ ତରଫରୁ ଅନୁରୂପ ଧାରଣା ଦିଆଯିବା ଉଚିତ ବୋଲି କହିଥିଲେ । ଏଥିପାଇଁ ସେ ଆଗରୁ ଦିଲ୍ଲୀ ଯାଇ ପ୍ରାକ୍ କ୍ଷେତ୍ର ପ୍ରସ୍ତୁତି କାର୍ଯ୍ୟ

କରିବେ ବୋଲି ପ୍ରକାଶ କଲେ । ଶ୍ରୀ ଦିଲ୍ଲୀପ ରାୟ, ଶ୍ରୀ ବ୍ରଜକିଶୋର ତ୍ରିପାଠୀ, ଶ୍ରୀ ଭର୍ତ୍ତୃହରି ମହାତାବଙ୍କ ସହ ମହାସଚିବ ଏ ବିଷୟରେ କଥାବାର୍ତ୍ତା କରିବେ ବୋଲି ସ୍ଥିର ହେଲା । ଏଥିପାଇଁ ଓଡିଶାରୁ ଏକ ପ୍ରତିନିଧି ମଣ୍ଡଳ ଯିବା ପାଇଁ ସ୍ଥିର ହେଲା । ନିମ୍ନଲିଖିତ ବ୍ୟକ୍ତିମାନେ ଏହି ପ୍ରତିନିଧି ମଣ୍ଡଳରେ ଅନ୍ତର୍ଭୁକ୍ତ ହେବେ ।

(୧) ବସନ୍ତ କୁମାର ପାଣିଗ୍ରାହୀ (୨) କୈଳାସ ଆଚାର୍ଯ୍ୟ (୩) ଶମତୀ ଅନ୍ନପୂର୍ଣ୍ଣା ମିଶ୍ର (୪) ରବିନାରୟଣ ପାଣି (୫) ଅରୁଣ ଶଙ୍କର ମିଶ୍ର (୬) ତାଳଚେର ରାଜା ସାହେବ ।

ଡିସେମ୍ବର ୧୬ରେ ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ ଆଗୁଆ ଦିଲ୍ଲୀ ଯିବେ ଏବଂ ଅନ୍ୟମାନେ ୨୦ ତାରିଖରେ ଦିଲ୍ଲୀ ଯିବେ । ସବୁ ରାଜନୈତିକ ଦଳର ସଭାପତିମାନଙ୍କୁ ୨୨ ତାରିଖ ଧାରଣା ବିଷୟରେ ଚିଠି ଲେଖାଯିବ ଏବଂ ଛପା ମେମୋରାଣ୍ଡମ୍ ଦିଆଯିବ । ମହାସଚିବ ଏଥିପ୍ରତି ଦୃଷ୍ଟି ଦେବାକୁ ଅନୁରୋଧ କରାଗଲା ।

୩ - ସମ୍ବିଧାନ ସମ୍ପର୍କରେ ଗୁରୁପ୍ରସାଦ ମହାନ୍ତି, ପଦ୍ମଚରଣ ନାୟକ, କୈଳାସ ଆଚାର୍ଯ୍ୟ ପ୍ରମୁଖ କେତେକ ପ୍ରସ୍ତାବ ଦେଇଥିଲେ । ଡାକ୍ତର ମହାନ୍ତି ଦରିଆପରି ଶାଖା ଗଠନ ସମ୍ପର୍କରେ ପ୍ରସ୍ତାବ ଦେଇ ଆମେରିକାରେ ଶତାଧିକ ସଭ୍ୟ ଥିବାରୁ ଜଣେ ଦରିଆପାରି ସଚିବ ନିଯୁକ୍ତି ବ୍ୟବସ୍ଥା ସମ୍ବିଧାନରେ ରଖିବାକୁ କହିଥିଲେ । ନୀତିଗତ ଭାବେ ତାହା ଗୃହୀତ ହୋଇ ସମ୍ବିଧାନ ସଂଶୋଧନ ସମୟରେ ଏହି ବ୍ୟବସ୍ଥା ଅନ୍ତର୍ଭୁକ୍ତ ହେବାକୁ ସ୍ଥିର ହେଲା । ଡକ୍ଟର ମହାନ୍ତି ଦରିଆପରି ଶାଖା ଗୁଡିକପାଇଁ ସଂଯୋଜକ ରହିବେ ବୋଲି ସ୍ଥିର ହେଲା । ତାଙ୍କ ଦ୍ୱାରା ଗଠିତ ଆମେରିକା ଓ କାନଡାର ଶାଖାଗୁଡିକୁ ଅନୁମୋଦନ ପ୍ରଦାନ କରାଗଲା । ଆମେରିକା ଶାଖା ଗୁଡିକରେ ଦମ୍ପତି (ସ୍ୱାମୀ-ସ୍ତ୍ରୀ) ମାନେ ଆଜୀବନ ସଭ୍ୟ ହେଲେ ୪୦ ଡଲାର ଏବଂ ଜଣେ ସଭ୍ୟ ହେଲେ ୨୫ ଡଲାର ହିସାବରେ ଡକ୍ଟର ମହାନ୍ତି ଆଜୀବନ ସଭ୍ୟ ଚାନ୍ଦା ଆଦାୟ କରିଛନ୍ତି; ତାହାକୁ ଅନୁମୋଦନ କରାଗଲା ଏବଂ ସମ୍ବିଧାନ ସଂଶୋଧନ ବେଳେ ଏହା ଅନ୍ତର୍ଭୁକ୍ତ ହେବ ବୋଲି ନିଷ୍ପତ୍ତି ନିଆଗଲା । ବର୍ତ୍ତମାନ ପାଇଁ ଦରିଆପାରି ଶାଖା ଗୁଡିକର ସଂଯୋଜକ ନିଯୁକ୍ତି ପ୍ରସ୍ତାବ ଗୃହୀତ ହେଲା ।

ଶ୍ରୀ ପଦ୍ମଚରଣ ନାୟକଙ୍କ ଦ୍ୱାରା ସୂଚିତ ସଂଶୋଧନଗୁଡିକ ସେ ଲିଖିତ ଆକାରରେ ଦେଲେ ସମ୍ବିଧାନ ସଂଶୋଧନ କମିଟିରେ ବିଚାର କରାଯାଇ ସମ୍ବିଧାନ ସଂଶୋଧନ ହେବ ବୋଲି ସ୍ଥିର ହେଲା ।

ଶ୍ରୀ କୈଳାସ ଆଚାର୍ଯ୍ୟ 'ସୋସାଇଟିକ୍ ରେଜିଷ୍ଟ୍ରେସନ ଆକ୍ଟ, ୧୯୬୦ କୁ ଆଖିରେ ରଖି ସମ୍ବିଧାନ ସଂଶୋଧନ କରିବାକୁ ପ୍ରସ୍ତାବ ଦେଇଥିଲେ । ଶ୍ରୀ ଆଚାର୍ଯ୍ୟ 'ସଂବିଧାନ ସଂଶୋଧନ କମିଟି'ରେ ସଭ୍ୟ ରହିବେ ବୋଲି ନିଷ୍ପତ୍ତି ନିଆଗଲା । ସମ୍ବିଧାନର ସମ୍ପୂର୍ଣ୍ଣ ନବୀକରଣ ନିମନ୍ତେ ସେ ମତ ଦେଇଥିଲେ ।

ଯେଉଁ ଜିଲ୍ଲା ବା ଅଞ୍ଚଳରେ ୨୦ ଜଣ ଆଜୀବନ ସଭ୍ୟ ହେବେ, ସେଠାରେ ଏକ ଶାଖା ଗଠନ କରାଯିବା ନିମନ୍ତେ ନୀତିଗତ ନିଷ୍ପତ୍ତି ନିଆଗଲା ଏବଂ ପ୍ରତ୍ୟେକ ଜିଲ୍ଲାରୁ ୧୦ ଜଣ 'ପରିଷଦ'କୁ ଯିବେ ବୋଲି ସ୍ଥିର ହେଲା ।

ସଂଗୃହୀତ ଆଜୀବନ ସଭ୍ୟ ଚାନ୍ଦା ବ୍ୟାଙ୍କ୍‌ରେ 'ସ୍ଥାୟୀ ଜମା' କରାଯିବାକୁ ସ୍ଥିରହେଲା ।

ଶ୍ରୀ ପଦ୍ମଚରଣ ନାୟକ ଦେଇଥିବା ସଂଶୋଧନ ପ୍ରସ୍ତାବ ଯଥା :- ବାର୍ଷିକ ସଭ୍ୟ ବା ସାଧାରଣ ସଭ୍ୟ ଚାନ୍ଦା ୫ ଟଙ୍କା ଯାଗାରେ ୧୦ ଟଙ୍କା, କାର୍ଯ୍ୟକାରୀ କମିଟି ୪ ମାସ ବଦଳରେ ୩ ମାସରେ ବସିବା ଏବଂ ସଭାପତି, ଉପସଭାପତି, ମହାସଚିବ, ସଚିବ ଓ କୋଷାଧକ୍ଷଙ୍କୁ ନେଇ ଏକ 'ମଞ୍ଚ ସମିତି' ଗଠିତ ହେବା ନୀତିଗତ ଭାବେ ସମର୍ଥିତ ହେଲା । ଏହା ସମ୍ବିଧାନ ସଂଶୋଧନ ବେଳେ ବିଚାର କରାଯାଇ ଅନ୍ତର୍ଭୁକ୍ତ ହେବା ସ୍ଥିରହେଲା ।

୪ - ସବୁ ଜିଲ୍ଲାରୁ ୧୦ ଜଣ କରି ସଭ୍ୟ ପରିଷଦକୁ ମନୋନୀତ ହୋଇ ପ୍ରସ୍ତାବ ଆସି ନ ଥିବାରୁ ଏବଂ ସମ୍ବିଧାନ ସଂଶୋଧନ କମିଟି ବସି ସଂଶୋଧନ ଚୂଡ଼ାନ୍ତ ହୋଇ ନ ଥିବାରୁ ଏହି ଦୁଇଟି କାର୍ଯ୍ୟକ୍ରମ ଅର୍ଥାତ୍ 'ପରିଷଦ ଗଠନ' ଓ 'ସମ୍ବିଧାନ ସଂଶୋଧନ' ତାଳଚେରଠାରେ ଆଗାମୀ ବାର୍ଷିକ ଅଧିବେଶନ (ନଭେମ୍ବର ୧୨ ଓ ୧୩) ରେ କରାଯାଇ ପାରିବ ନାହିଁ ବୋଲି ନିଷ୍ପତ୍ତି ନିଆଗଲା । ଏଥିପାଇଁ ଫେବୃୟାରୀ-ମାର୍ଚ୍ଚ ବେଳକୁ ଏକ ଅଧିବେଶନ ଅନୁଷ୍ଠିତ ହେବ ବୋଲି ସ୍ଥିର ହେଲା । ଏହା ମଧ୍ୟରେ ପରିଷଦ ଗଠନ ଓ ସମ୍ବିଧାନ ସଂଶୋଧନ ସମ୍ପର୍କୀୟ ସମସ୍ତ ପ୍ରାକ୍ ପ୍ରସ୍ତୁତି କାର୍ଯ୍ୟ ସଂପନ୍ନ ହେବାକୁ ନିଷ୍ପତ୍ତି ନିଆଗଲା ।

୫ - ନବକିଶୋର ଦାସଙ୍କ ଦ୍ୱାରା ଲିଖିତ ମଧୁବାବୁଙ୍କ ଜୀବନୀର ପୁନଃପ୍ରକାଶନ ନିମନ୍ତେ ଶ୍ରୀ ରଜନୀ ଭୂଷଣ ପାଣି ପାଣ୍ଠି ଉଠାଇବାକୁ ଦାୟିତ୍ୱ ନେଇଥିବା କଥା ଶ୍ରୀ ପଦ୍ମଚରଣ ନାୟକ ଉତ୍ଥାପନ କରିଥିଲେ । ଏଥିପାଇଁ ଉଦ୍ଦିଷ୍ଟ ରସିଦ୍ ବହିରେ ଶ୍ରୀ ପାଣି ଅର୍ଥ ସଂଗ୍ରହ କରିବେ ଏବଂ ଏହି କାର୍ଯ୍ୟ ସ୍ୱେଚ୍ଛାକୃତ ଭାବେ କରୁଥିବାରୁ ଶ୍ରୀ ପାଣିଙ୍କୁ ଧନ୍ୟବାଦ ଜ୍ଞାପନ କରାଯାଇଥିଲା ।

ପରିଶେଷରେ ସଭାପତିଙ୍କୁ ଧନ୍ୟବାଦ ଜଣାଇ ସଭା ସାଙ୍ଗ ହେଲା ।

| | | |
|---|---|---|
| ଗୋପାଳକୃଷ୍ଣ ଶ୍ରୀଚନ୍ଦନ | ବସନ୍ତ କୁମାର ପାଣିଗ୍ରାହୀ | ହରିଶ୍ଚନ୍ଦ୍ର ବକ୍ସିପାତ୍ର |
| ସଚିବ | ମହାସଚିବ | ସଭାପତି |

# ତା-୭-୨-୯୯ ରବିବାର ଅପରାହ୍ନ ତିନି ଘଣ୍ଟା ସମୟରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ କାର୍ଯ୍ୟ ନିର୍ବାହୀ ସମିତି ବୈଠକ ବିବରଣୀ

ଉପସ୍ଥିତ ସଭ୍ୟ :

(୧) ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର (୨) ପଦ୍ମଚରଣ ନାୟକ (୩) ସୁରେନ୍ଦ୍ର ମୋହନ ପଣ୍ଡା (୪) ଅଭୟ ସାମନ୍ତରାୟ (୫) ହରିହର ବାହିନୀପତି (୬) ଅରବିନ୍ଦ ପଟ୍ଟନାୟକ (୭) ବସନ୍ତ କୁମାର ପାଣିଗ୍ରାହୀ (୮) କୈଳାସ ଆଚାର୍ଯ୍ୟ (୯) ଶ୍ରୀଚରଣ ସ୍ୱାଇଁ (୧୦) ଅନନ୍ତ ପ୍ରସାଦ ଜେନା (୧୧) ଅନ୍ନପୂର୍ଣ୍ଣା ମିଶ୍ର (୧୨) ଗୋପାଳକୃଷ୍ଣ ଶ୍ରୀଚନ୍ଦନ (୧୩) କନକବାଳା ମହାନ୍ତି

ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ସଭାପତିତ୍ୱରେ ବୈଠକ ଅନୁଷ୍ଠିତ ହୋଇଥିଲା ।

ଗତ ୬-୧୨-୯୮ ରେ ଅନୁଷ୍ଠିତ ବୈଠକ ବିବରଣୀ ପାଠ କରାଯାଇ ଠିକ୍ ଥିବାରୁ ଦୃଢ଼ୀକୃତ ହୋଇଥିଲା । ତହିଁରେ ଗୃହୀତ ପ୍ରସ୍ତାବ ଗୁଡ଼ିକ ଉପରେ ସମୀକ୍ଷା କରାଯାଇଥିଲା ।

୧. ଡାକ୍ତର ଶ୍ରୀ ବିଶ୍ୱନାଥ କର ସୁପ୍ରିମ୍ କୋର୍ଟରେ ଫାଇଲ୍ କରିଥିବା ଜନସ୍ୱାର୍ଥ ମାମଲା ସମ୍ପର୍କୀୟ କାଗଜପତ୍ର ତାଙ୍କଠାରୁ ଏ ପର୍ଯ୍ୟନ୍ତ ମିଳି ନ ଥିବାରୁ ଷଢ଼େଇକଳା-ଖରସୁଆଁ ଉପରେ ସର୍ବୋଚ୍ଚ ନ୍ୟାୟାଳୟକୁ 'ଇଣ୍ଟରଭେନର୍' ଭାବେ ଯିବା ସମ୍ଭବପର ହୋଇପାରି ନାହିଁ । ଶ୍ରୀ କରଙ୍କଠାରୁ ସଂପୃକ୍ତ କାଗଜ ଓ ନଥିର ନକଲ ପାଇବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ସ୍ଥିର ହେଲା ।

୨. ରାଜଧାନୀ ଭୁବନେଶ୍ୱରରେ ଉତ୍କଳ ସମ୍ମିଳନୀକୁ କାର୍ଯ୍ୟାଳୟ ନିର୍ମାଣ ପାଇଁ ଜମି ମିଳିବା ଉପରେ ଆସିଥିବା ସରକାରୀ ପତ୍ରର ଉତ୍ତର ଦିଆଯାଇଥିବା ବିଷୟ ସଚିବ ପ୍ରକାଶ କରିଥିଲେ । ସରକାରଙ୍କର ସଂପୃକ୍ତ ବିଭାଗସହ ପ୍ରତ୍ୟକ୍ଷ ଯୋଗାଯୋଗ ରକ୍ଷା କରି ଏହାକୁ ତ୍ୱରାନ୍ୱିତ କରିବା ସ୍ଥିର ହେଲା ।

୩. ସମ୍ବିଧାନ ସଂଶୋଧନ କମିଟି ଆଜି ପୂର୍ବାହ୍ନରେ ବସି ସମ୍ମିଳନୀ ନିୟମାବଳୀର ଯେଉଁ ସଂଶୋଧନ ଚିଠା ପ୍ରସ୍ତୁତ କରିଛନ୍ତି, ତାହା ଉପରେ ଆଲୋଚନା କରାଯାଇ ତାହା ଗୃହୀତ ହେଲା । ଏହାର ଚୂଡ଼ାନ୍ତ ଅନୁମୋଦନ ପାଇଁ ପଦକ୍ଷେପ ନେବାକୁ ମହାସଚିବଙ୍କୁ ଅନୁରୋଧ କରାଗଲା । ସମ୍ବିଧାନରେ 'ଧ୍ୱଜା'ର ବର୍ଣ୍ଣନା ରହିବ, ନାଲି ରଙ୍ଗର ପୃଷ୍ଠଭୂମିରେ ଧଳା ପତାକା ଓ ନୀଳରଙ୍ଗର ଚକ୍ର ରହିବାକୁ ସ୍ଥିର ହେଲା ।

୪. ଜିଲ୍ଲା ଗୁଡ଼ିକର ଶାଖା ଗଠନ ଉପରେ ସମୀକ୍ଷା କରାଯାଇଥିଲା । ଏ ପର୍ଯ୍ୟନ୍ତ ପନ୍ଦରଟି ଜିଲ୍ଲାର ଶାଖା ଗଠିତ ହୋଇ ଯାଇଛି । ଅବଶିଷ୍ଟ ପନ୍ଦର ଜିଲ୍ଲାର ଶାଖା ଗଠନ ପାଇଁ

ଉଦ୍ୟମ କରାଯିବାକୁ ସ୍ଥିର ହେଲା । ଦାୟିତ୍ୱ ନେଇଥିବା ସଭ୍ୟମାନେ ସକ୍ରିୟ ପଦକ୍ଷେପ ନେବା ପାଇଁ ଅନୁରୋଧ କରାଗଲା ।

୫. ସଂଶୋଧିତ ନିୟମାବଳୀ ଚୂଡାନ୍ତ ଭାବେ ଗୃହୀତ ହେଲା ପରେ ନୂତନ ସାଧାରଣ ପରିଷଦ ଓ କାର୍ଯ୍ୟନିର୍ବାହୀ ସମିତି ଗଠନ କରାଯିବାକୁ ନୂତନ୍ ସଂଶୋଧିତ ନିୟମାବଳୀ ପ୍ରକାରେ ପଦକ୍ଷେପ ନେବା ପାଇଁ ସ୍ଥିର ହେଲା ।

୬. ଆୟ ବ୍ୟୟ ସମୀକ୍ଷା କରାଯାଇଥିଲା । ଭୁବନେଶ୍ୱର ଓ ବ୍ରହ୍ମପୁର ଆୟ ବ୍ୟୟ ହିସାବକୁ ଏକତ୍ର କରି ଏକ ଚୂଡାନ୍ତ ଆୟ ବ୍ୟୟ ଫର୍ଦ୍ଦ ବାହାର କରିବାକୁ ମହାସଚିବ ତୁରନ୍ତ ବ୍ୟବସ୍ଥା କରିବେ ବୋଲି ପ୍ରତିଶ୍ରୁତି ଦେଲେ ।

୭. ଓଡିଶା ରାଜ୍ୟ ସମବାୟ ବ୍ୟାଙ୍କ୍‌ରେ ସଞ୍ଚୟ ଜମା ବହିରେ ଥିବା ଅର୍ଥରୁ ୮୦ ହଜାର ଟଙ୍କା ସେହି ବ୍ୟାଙ୍କ୍‌ରେ ତିନି ବର୍ଷ ପାଇଁ ସ୍ଥାୟୀ ଜମା କରାଯିବାକୁ ସ୍ଥିର ହେଲା । କୋଷାଧ୍ୟକ୍ଷ ଓ ସଚିବ ଏ ଦିଗରେ ବିହିତ ପଦକ୍ଷେପ ନେବାକୁ ଅନୁରୋଧ କରାଗଲା ।

୮. ସଭ୍ୟ ପରିଚୟ ପତ୍ର ପ୍ରତି ୧୦ ଟଙ୍କାରେ ସଭ୍ୟମାନଙ୍କୁ ଯୋଗାଇ ଦେବାକୁ ସ୍ଥିରହେଲା ।

୯. ସଂପ୍ରତି ଓଡିଶାର ଆଇନ୍ ଶୃଙ୍ଖଳା ପରିସ୍ଥିତି ବିପର୍ଯ୍ୟସ୍ତ ହୋଇ ପଡିଥିବାରୁ ସମ୍ମିଳନୀ ତରଫରୁ ଉଦ୍‌ବେଗ ପ୍ରକାଶ କରାଯାଇ ଏକ ପ୍ରେସ୍ ବିବୃତ୍ତି ଦେବାକୁ ନିଷ୍ପତ୍ତି ନିଆଗଲା ।

ପରିଶେଷରେ ସଭାପତିଙ୍କୁ ଧନ୍ୟବାଦ ଅର୍ପଣ କରାଯାଇ ସଭା ସାଙ୍ଗ ହେଲା ।

| | | |
|---|---|---|
| ଗୋପାଳକୃଷ୍ଣ ଶ୍ରୀଚନ୍ଦନ | ବସନ୍ତ କୁମାର ପାଣିଗ୍ରାହୀ | ହରିଶ୍ଚନ୍ଦ୍ର ବକ୍ସିପାତ୍ର |
| ସଚିବ | ମହାସଚିବ | ସଭାପତି |

## ତା-୨୯-୫--୯୯ ଶନିବାର ପୂର୍ବାହ୍ନ ୧୦ ଘଣ୍ଟା ସମୟରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ କାର୍ଯ୍ୟ ନିର୍ବାହୀ ସମିତି ବୈଠକ ବିବରଣୀ

ଉପସ୍ଥିତ ସଭ୍ୟ :

(୧) ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର (୨) ପଦ୍ମଚରଣ ନାୟକ (୩) ସୁରେନ୍ଦ୍ର ମୋହନ ପଣ୍ଡା (୪) ଅଚାର୍ଯ୍ୟ ଭାବାନନ୍ଦ (୫) ହରିହର ବାହିନୀପତି (୬) ଅରୁଣ ଶଙ୍କର ମିଶ୍ର (୭) ବସନ୍ତ କୁମାର ପାଣିଗ୍ରାହୀ (୮) କୈଳାସ ଆଚାର୍ଯ୍ୟ (୯) ଗୁରୁପ୍ରସାଦ ମହାନ୍ତି (୧୦) ଇଂ ଅମରେନ୍ଦ୍ର କୁମାର ଦାସ (୧୧) ଅନ୍ନପୂର୍ଣ୍ଣା ମିଶ୍ର (୧୨) ଗୋପାଳକୃଷ୍ଣ ଶ୍ରୀଚନ୍ଦନ (୧୩) ବିଚିତ୍ରାନନ୍ଦ ସାହୁ ।

୧. ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ସଭାପତିତ୍ୱରେ ବୈଠକ ଅନୁଷ୍ଠିତ ହୋଇଥିଲା । ଗତ ବୈଠକର ବିବରଣୀ ପାଠ କରାଯାଇ ଠିକ୍ ଥିବାରୁ ଦୃଢ଼ୀକୃତ ହୋଇଥିଲା ଏବଂ ବିଭିନ୍ନ ପ୍ରସ୍ତାବ ଉପରେ କାର୍ଯ୍ୟାନୁଷ୍ଠାନର ଅଗ୍ରଗତି ସମୀକ୍ଷା କରାଗଲା ।

୨. ରାଜଧାନୀ ଭୁବନେଶ୍ୱର ମଧ୍ୟରେ ରାଜ୍ୟ ସରକାରଙ୍କ ସାଧାରଣ ପ୍ରଶାସନ ବିଭାଗ ସମ୍ମିଳନୀ କାର୍ଯ୍ୟାଳୟ ନିର୍ମାଣ ନିମନ୍ତେ ଯାଗା ଯୋଗାଇ ଦେବା ସମ୍ପର୍କରେ ତଦ୍‌ବିର୍ ଜାରୀ ରଖିବା ପାଇଁ ସ୍ଥିର ହେଲା ।

୩. ସମ୍ବିଧାନ ସଂଶୋଧନ ଚିଠା ପ୍ରସ୍ତୁତିର ଅଗ୍ରଗତି ସମ୍ପର୍କରେ ମହାସଚିବ ଜଣାଇଥିଲେ ।

୪. ଗତ ବୈଠକ (୭-୨-୯୯) ଠାରୁ ଏ ଯାବତ୍ କେତୋଟି ଜିଲ୍ଲାରୁ ପରିଷଦକୁ ସଭ୍ୟ ମନୋନୟନ ଓ ଜିଲ୍ଲା ଶାଖା ଗଠନ ସମ୍ପର୍କରେ ମହାସଚିବ ଓ ସଚିବ ସୂଚନା ଦେଇଥିଲେ । ଖୋର୍ଦ୍ଧା ଜିଲ୍ଲା ଶାଖା ଗଠନରେ ଉପୁଜିଥିବା ଅସୁବିଧା ସମ୍ପର୍କରେ ଆଲୋଚନା କରାଯାଇ ଏହାର ତୁରନ୍ତ ସମାଧାନ ପ୍ରତି ଦୃଷ୍ଟି ଦେବାକୁ ସ୍ଥିର ହେଲା । ପାରାଦ୍ୱୀପଠାରେ ଏକ ସ୍ୱତନ୍ତ୍ର ଶାଖା ଗଠନ କରାଯିବା ପାଇଁ ନିଷ୍ପତ୍ତି ନିଆଗଲା ।

୫. ଇତିମଧ୍ୟରେ ସମସ୍ତ ଜିଲ୍ଲା ଶାଖା ଗଠନ ଓ ପରିଷଦକୁ ସଭ୍ୟ ମନୋନୟନ କରାଯିବା ପାଇଁ ଉଦ୍ୟମ ହେବ ଏବଂ ଆଗାମୀ ସେପ୍ଟେମ୍ବର ୫ ତାରିଖରେ ଭୁବନେଶ୍ୱରଠାରେ ସାଧାରଣ ପରିଷଦର ବୈଠକ ଆହୂତ ହେବା ନିମନ୍ତେ ସ୍ଥିର ହେଲା । ଏହି ବୈଠକର ପୂର୍ବାହ୍ନ ଅଧିବେଶନରେ ସମ୍ବିଧାନ ସଂଶୋଧନ ଗୃହୀତ ହୋଇ ଅପରାହ୍ନ ଅଧିବେଶନରେ ସାଧାରଣ ପରିଷଦ ଗଠନ, କାର୍ଯ୍ୟ ନିର୍ବାହୀ ସମିତି ତଥା କର୍ମକର୍ତ୍ତା ନିର୍ବାଚନ ଅନୁଷ୍ଠିତ ହେବ ବୋଲି ସ୍ଥିର ହେଲା ।

୬. ଷଢ଼େଇକଳା-ଖରସୁଆଁ ତଥା ବିହାରସ୍ଥ ବିଚ୍ଛିନ୍ନାଞ୍ଚଳରେ ଓଡିଆ ଭାଷା ଶିକ୍ଷାର ଶୋଚନୀୟ ଅବସ୍ଥା ସମ୍ପର୍କରେ ସୁବିସ୍ତୃତ ଆଲୋଚନା ହେଲା । ଚକ୍ରଧରପୁରଠାରେ ଆଗାମୀ ଜୁନ୍ ୬ ତାରିଖରେ ଅନୁଷ୍ଠିତ ହେବାକୁ ଥିବା ଓଡିଆ ଶିକ୍ଷକମାନଙ୍କ ବୈଠକରେ ସଭାପତି ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବକ୍ସିପାତ୍ର ଓ ଡକ୍ଟର ଗୁରୁ ପ୍ରସାଦ ମହାନ୍ତି ଯୋଗଦେବା ସ୍ଥିର ହେଲା ।

୭. ସେହି ଅବସରରେ ଡ: ବିଶ୍ୱନାଥ କରଙ୍କ ସହ ସେ ସୁପ୍ରିମ୍ କୋର୍ଟରେ ଫାଇଲ୍ କରିଥିବା ଆବେଦନ ପତ୍ର ଉପରେ ମଧ୍ୟ ସଭାପତି ଆଲୋଚନା କରିବେ ।

୮. ବିହାର ତଥା ଅନ୍ୟାନ୍ୟ ବିଚ୍ଛିନ୍ନାଞ୍ଚଳରେ ଓଡିଆ ଶିକ୍ଷା ସମ୍ପର୍କରେ ପରାମର୍ଶ ଦେବା ନିମନ୍ତେ ନିମ୍ନଲିଖିତ ବ୍ୟକ୍ତିମାନଙ୍କୁ ନେଇ ଏକ ସ୍ଥାୟୀ କମିଟି ଗଠନ କରାଗଲା : ପ୍ରଫେସର ଦେବେନ୍ଦ୍ର କୁମାର ରାୟ, ଡ: ଅରବିନ୍ଦ ପଟ୍ଟନାୟକ, ପ୍ରଫେସର ଡି. କେ. ସାମନ୍ତରାୟ, ଅଧ୍ୟାପକ କୈଳାସ ଆଚାର୍ଯ୍ୟ, ପ୍ରଫେସର ରଜତ କୁମାର କର, ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ରାଉତ, ପ୍ରଫେସର ଦୀପକ କୁମାର ଷଡଙ୍ଗୀ, ଶ୍ରୀଯୁକ୍ତ ଦିଗମ୍ବର ଶତପଥୀ,

ପ୍ରଫେସର ଦେବକାନ୍ତ ମିଶ୍ର, ଆଚାର୍ଯ୍ୟ ଭାବାନନ୍ଦ, ଶ୍ରୀଯୁକ୍ତ ବରଦାକାନ୍ତ ମିଶ୍ର (ଉପ ଶାସନ ସଚିବ, ଶିକ୍ଷା ବିଭାଗ), ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ, ବିଚିତ୍ରାନନ୍ଦ ସାହୁ, ଡ: ଗୁରୁପ୍ରସାଦ ମହାନ୍ତି, ବସନ୍ତ କୁମାର ପାଣିଗ୍ରାହୀ, ହରିଶ୍ଚନ୍ଦ୍ର ବକ୍ସିପାତ୍ର ପ୍ରମୁଖ ।

୯. ବିଦ୍ୟାଳୟ ଗୁଡ଼ିକର ଆସବାସପତ୍ର କ୍ରୟ ପାଇଁ ଆବଶ୍ୟକ ଅର୍ଥ ସାଂସଦ ପାଣ୍ଠିରୁ ଯୋଗାଇ ଦେବା ନିମନ୍ତେ ସାଂସଦମାନଙ୍କୁ ଅନୁରୋଧ କରାଗଲା ।

୧୦. ନିଯୁକ୍ତି କ୍ଷେତ୍ରରେ ବିଛିନ୍ନାଞ୍ଚଳର ଯୁବକ ଯୁବତୀମାନଙ୍କ ପାଇଁ ରାଜ୍ୟ ସରକାର ୧୦ ଶତକଡା ସ୍ଥାନ ସଂରକ୍ଷଣ କରିବା ପାଇଁ ଅନୁରୋଧ କରାଗଲା ।

ଓଡ଼ିଶାକୁ ଷଢ଼େଇକଳା-ଖରସୁଆଁ ଫେରସ୍ତ

ଝାରସୁଗୁଡ଼ା ଓ ତାଳଚେର ଅଧିବେଶନରେ ଗୃହୀତ ପ୍ରସ୍ତାବ ଉପରେ କି କି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଛି, ସେ ସମ୍ପର୍କରେ ସୁବିସ୍ତୃତ ଆଲୋଚନା ହେଲା । ଉଭୟ ପ୍ରଶାସନିକ ଓ ବିଚାର ବିଭାଗୀୟ ରଣନୀତି ସ୍ଥିର କରିବା ପାଇଁ ସ୍ଥିର ହେଲା । ୧୯୯୯ ଜୁନ୍ ଶେଷ ସୁଦ୍ଧା ଏକ 'ମେମୋରାଣ୍ଡମ୍' ପ୍ରସ୍ତୁତ ହୋଇ ପୂର୍ବରୁ ନିର୍ଦ୍ଧାରିତ ପ୍ରତିନିଧି ମଣ୍ଡଳ ଦିଲ୍ଲୀ ଯାଇ କେନ୍ଦ୍ର ସରକାରଙ୍କ ସହ ଆଲୋଚନା କରିବେ । ପ୍ରଥମେ ସଭାପତି, ମହାସଚିବ ଓ ଡ: ଗୁରୁପ୍ରସାଦ ମହାନ୍ତି ଦିଲ୍ଲୀ ଯାଇ ପ୍ରଧାନମନ୍ତ୍ରୀ ଓ ସ୍ୱରାଷ୍ଟ୍ରମନ୍ତ୍ରୀଙ୍କୁ ଭେଟି କ୍ଷେତ୍ର ପ୍ରସ୍ତୁତ କରିବେ ବୋଲି ସ୍ଥିର ହେଲା ।

୧୧. ଏଥିପାଇଁ ଆବଶ୍ୟକ ପାଣ୍ଠି ସଂଗ୍ରହ ପାଇଁ ଶ୍ରୀଯୁକ୍ତ କୈଳାସ ଆଚାର୍ଯ୍ୟଙ୍କ ଅଧିନାୟକତ୍ୱରେ ଏକ ସବ୍ କମିଟି ଗଠନ କରାଗଲା । ସବ୍ କମିଟିରେ ଅନ୍ୟ ଦୁଇ ସଭ୍ୟ ଭାବେ ଶ୍ରୀଯୁକ୍ତ ସୁରେନ୍ଦ୍ର ମୋହନ ପଣ୍ଡା ଓ ଶ୍ରୀଯୁକ୍ତ ପ୍ରମୋଦ ସାହୁ (କେନ୍ଦ୍ରପଡ଼ା) ରହିବେ ବୋଲି ସ୍ଥିର ହେଲା ।

୧୨. ସମ୍ମିଳନୀର ହିସାବ ଏକୀକରଣ ଓ ସମୀକ୍ଷା ବ୍ୟବସ୍ଥା

ସମସ୍ତ ଜିଲ୍ଲା ଶାଖା ଓ ସମ୍ପୃକ୍ତ ସମସ୍ତ କର୍ମକର୍ତ୍ତା ତଥା ସଭ୍ୟମାନଙ୍କୁ ଜୁନ୍ ପହିଲା ସୁଦ୍ଧା ଗତ ଆର୍ଥିକ ବର୍ଷ (୧୯୯୮-୯୯) ର ଆୟ ବ୍ୟୟ ହିସାବ ଫର୍ଦ୍ଦ (ଶାଖା ସ୍ତରରେ ସମୀକ୍ଷା କରାଇ) ରାଜ୍ୟ କାର୍ଯ୍ୟାଳୟକୁ ପଠାଇବା ନିମନ୍ତେ ପତ୍ର ଲେଖାଯାଇଥିବା ବିଷୟ ସଚିବ ସୂଚନା ଦେଇଥିଲେ । ଏ ସମସ୍ତ ହିସାବ ଫର୍ଦ୍ଦ ସହ ରାଜ୍ୟ କାର୍ଯ୍ୟାଳୟ ଦ୍ୱାରା ପ୍ରସ୍ତୁତ ଆୟବ୍ୟୟ ଫର୍ଦ୍ଦର ସମୀକ୍ଷା ଚାଟାର୍ଡ ଆକାଉଣ୍ଟାଣ୍ଟଙ୍କ ଦ୍ୱାରା ଆଗାମୀ ସାଧାରଣ ପରିଷଦ ବୈଠକ ପୂର୍ବରୁ କରିନେବା ପାଇଁ ସ୍ଥିର ହେଲା ।

୧୩. ଭୁବନେଶ୍ୱର - ରାଜମହଲ ଛକରେ ମଧୁବାବୁଙ୍କ ପ୍ରତିମୂର୍ତ୍ତି ସ୍ଥାପନ ନିମନ୍ତେ ସରକାରଙ୍କଠାରୁ ମିଳିବାକୁ ଥିବା ସ୍ଥାନ ପ୍ରାପ୍ତି ସମ୍ପର୍କରେ ଆଲୋଚନା କରାଯାଇଥିଲା । ସରକାରଙ୍କ ସହ ଯୋଗାଯୋଗ କରି ଏହି ସ୍ଥାନ ପ୍ରାପ୍ତି ସମ୍ପର୍କରେ ତ୍ୱରାନ୍ୱିତ ପଦକ୍ଷେପ

ନେବାକୁ ସ୍ଥିର ହେଲା । ଓଡିଶା ବିଧାନ ସଭା ବାଚସ୍ପତିଙ୍କୁ ମଧ୍ୟ ଏ ବିଷୟରେ ପତ୍ର ଲେଖିବାକୁ ସ୍ଥିର ହେଲା ।

୧୪. ରାଉରକେଲା ଶାଖାର ବ୍ୟାଙ୍କ୍ ଆକାଉଣ୍ଟ୍ ଖୋଲାଯିବା ସମ୍ପର୍କରେ ଆଲୋଚନା ହେଲା । କୋଷାଧ୍ୟକ୍ଷ ଆଚାର୍ଯ୍ୟ ଭାବାନନ୍ଦ ସୂଚନା ଦେଲେ ଯେ, ରାଉରକେଲା ଶାଖା ବ୍ୟାଙ୍କ୍ ଆକାଉଣ୍ଟ୍ ଖୋଲି ସାରିଛନ୍ତି । ଏହି ପଦକ୍ଷେପ ପ୍ରତି ପରବର୍ତ୍ତୀ ଅନୁମୋଦନ ପ୍ରଦାନ କରାଯାଇ ବ୍ୟାଙ୍କ୍ ଜମା, ଆୟ ବ୍ୟୟ ହିସାବ ରୀତିମତ ରାଜ୍ୟ କାର୍ଯ୍ୟାଳୟକୁ ଜଣାଇବା ପାଇଁ ରାଉରକେଲା ସଭ୍ୟ ଶ୍ରୀ ବିଚିତ୍ରାନନ୍ଦ ସାହୁଙ୍କ ଜରିଆରେ ଅନୁରୋଧ କରାଗଲା । ଅନ୍ୟ ସମସ୍ତ ଜିଲ୍ଲା ଶାଖା ସେମାନଙ୍କ କ୍ଷେତ୍ରରେ ଏହାକୁ ପାଳନ କରିବା ପାଇଁ ଅନୁରୋଧ କରାଗଲା ।

୧୫. କଟକ ଶୈଳବାଳା ମହିଳା ମହାବିଦ୍ୟାଳୟ ପରିସର ମଧ୍ୟରେ ଥିବା ମଧୁ ସ୍ମୃତି ସଂଗ୍ରହାଳୟର ରକ୍ଷଣାବେକ୍ଷଣ ସମ୍ପର୍କରେ ଶ୍ରୀ କୈଳାସ ଆଚାର୍ଯ୍ୟ ଓ ଡ: ଗୁରୁପ୍ରସାଦ ମହାନ୍ତି ସବିଶେଷ ବୁଝାଇଥିଲେ । ଏ ସମ୍ପର୍କରେ ଉତ୍କଳ ସମ୍ମିଳନୀ ତରଫରୁ ରାଜ୍ୟ ସଂସ୍କୃତି ବିଭାଗକୁ ଏକ ସ୍ମାରକ ପତ୍ର ଦେବା ନିମନ୍ତେ ସ୍ଥିର ହେଲା । ଅଧ୍ୟାପକ କୈଳାସ ଆଚାର୍ଯ୍ୟ ଏଥିପାଇଁ ସଂଯୋଜକ ଭାବେ କାମ କରିବାକୁ ଅନୁରୋଧ କରାଗଲା ।

୧୬. ସ୍ୱର୍ଗତ ନବକିଶୋର ଦାସଙ୍କ ଦ୍ୱାରା ରଚିତ ମଧୁବାବୁଙ୍କ ଜୀବନୀ ପୁସ୍ତକ 'ଉତ୍କଳ ଗୌରବ ମଧୁସୂଦନ'ର ପୁନଃମୁଦ୍ରଣ କାର୍ଯ୍ୟ ସରିଛି ବୋଲି ମୁଦ୍ରଣ ଦାୟିତ୍ୱରେ ଥିବା ସଭ୍ୟ ଶ୍ରୀଯୁକ୍ତ ପଦ୍ମଚରଣ ନାୟକ ସୂଚନା ଦେଇଥିଲେ । ରାଜ୍ୟ ସରକାରଙ୍କର ଉଚ୍ଚ ଶିକ୍ଷା ବିଭାଗ ମାଧ୍ୟମରେ ରାଜ୍ୟର ସରକାରୀ ଓ ବେସରକାରୀ ମହାବିଦ୍ୟାଳୟମାନଙ୍କୁ ଏହି ପୁସ୍ତକକୁ ପ୍ରାକ୍ ପ୍ରକାଶନ ମୂଲ୍ୟ ୩୫ ଟଙ୍କା ରେ ଦେବାକୁ ଶିକ୍ଷା ବିଭାଗକୁ ଲେଖା ଯାଇଥିଲା । ପ୍ରାକ୍ ପ୍ରକାଶନ ସ୍ତରରେ ଶିକ୍ଷା ବିଭାଗ ତରଫରୁ ଅଗ୍ରୀମ ଅର୍ଥ ମିଳିପାରିଲା ନାହିଁ । ମହାବିଦ୍ୟାଳୟଗୁଡିକର ଅଧ୍ୟକ୍ଷମାନଙ୍କୁ ଏହି ପୁସ୍ତକ ପ୍ରତି ୩୫ ଟଙ୍କାରେ କିଣିବା ପାଇଁ ସରକାରୀ ନିର୍ଦ୍ଦେଶ ଦିଆଯାଇଥିଲା । ମୁଦ୍ରଣ ଓ ପ୍ରକାଶନ ପରେ ପ୍ରତ୍ୟେକ ପୁସ୍ତକର କେବଳ ପ୍ରକାଶନ ମୂଲ୍ୟ ୫୦ ଟଙ୍କା ପଡୁଛି । ପୁସ୍ତକ କିଣି ନେବାପାଇଁ ଶିକ୍ଷା ବିଭାଗକୁ ଅନୁରୋଧ କରାଯିବ ବୋଲି ପ୍ରସ୍ତାବ ଗୃହୀତ ହେଲା । ପୁନଶ୍ଚ ଏକକାଳୀନ ଶିକ୍ଷା ନିର୍ଦ୍ଦେଶକ ବହି ଗୁଡିକ କିଣି ନେଇ ମହାବିଦ୍ୟାଳୟମାନଙ୍କୁ ଯୋଗାଇ ଦେଲେ ସମ୍ମିଳନୀକୁ ପୁସ୍ତକ ଯୋଗାଣ ଏବଂ ପୁସ୍ତକ ମୂଲ୍ୟ ପ୍ରାପ୍ତି ସୁବିଧା ଜନକ ହେବ । ଏହି ପ୍ରସ୍ତାବ ଉଚ୍ଚ ଶିକ୍ଷା ବିଭାଗକୁ ଜଣାଇ ଦେବାକୁ ନିଷ୍ପତ୍ତି ନେବା ସଙ୍ଗେ ସଙ୍ଗେ ଉତ୍କଳ ସମ୍ମିଳନୀକୁ ଶିକ୍ଷା ବିଭାଗ ଏତିକି ସହାୟତା କରିବା ପାଇଁ ଅନୁରୋଧ କରାଗଲା ।

୧୭. କୋଷାଧକ୍ଷ ଆଚାର୍ଯ୍ୟ ଭାବାନନ୍ଦଙ୍କ ଇସ୍ତଫା ପ୍ରଦାନ ଉପରେ ଆଲୋଚନା ହୋଇଥିଲା । ଆଗାମୀ କର୍ମକର୍ତ୍ତା ନିର୍ବାଚନ ଓ କାର୍ଯ୍ୟ ନିର୍ବାହୀ ସମିତି ଗଠନ ସେପ୍ଟେମ୍ବର ୫ ତାରିଖରେ ପ୍ରସ୍ତାବିତ ସାଧାରଣ ପରିଷଦ ବୈଠକରେ ଅନୁଷ୍ଠିତ ହେବା ପର୍ଯ୍ୟନ୍ତ କୋଷାଧକ୍ଷ ଦାୟିତ୍ୱରେ ରହିବା ପାଇଁ ଆଚାର୍ଯ୍ୟ ଭାବାନନ୍ଦଙ୍କୁ ଅନୁରୋଧ କରାଗଲା । ମାତ୍ର ବ୍ୟକ୍ତିଗତ କାରଣରୁ ଆଚାର୍ଯ୍ୟ ଭାବାନନ୍ଦ ଆଉ କୋଷାଧକ୍ଷ ଦାୟିତ୍ୱ ତୁଲାଇ ପାରିବେ ନାହିଁ ବୋଲି ବାରମ୍ବାର କହିଥିଲେ । ଆଚାର୍ଯ୍ୟ ଭାବାନନ୍ଦ ଯଦି ଆଉ ଦାୟିତ୍ୱରେ ନ ରହି ଅବ୍ୟାହତି ନେବା ପାଇଁ ଜୋର୍ ଦେବେ, ତେବେ ମଧ୍ୟବର୍ତ୍ତୀକାଳୀନ ବ୍ୟବସ୍ଥା ସଭାପତି ଗ୍ରହଣ କରି ପାରିବେ ବୋଲି ପ୍ରସ୍ତାବ ଗୃହୀତ ହେଲା ।

୧୮. କୋଷାଧକ୍ଷ ଆଚାର୍ଯ୍ୟ ଭାବାନନ୍ଦ କେତେ ଗୁଡିଏ ସୁପରାମର୍ଶ ବିଭିନ୍ନ ପତ୍ର ମାଧ୍ୟମରେ ଦେଇଛନ୍ତି । ସମ୍ମିଳନୀର କାର୍ଯ୍ୟକ୍ରମରେ ସେହି ପ୍ରସ୍ତାବ ଗୁଡିକ ସହାୟକ ହେଲେ, ତାହା କାର୍ଯ୍ୟକାରୀ କରାଯାଇପାରେ ବୋଲି ମତ ପ୍ରକାଶ ପାଇଥିଲା । ମହାସଚିବ ଓ ସଚିବ ସେହି ପ୍ରସ୍ତାବ ଗୁଡିକ ପ୍ରତି ଦୃଷ୍ଟି ଦେବାକୁ ସ୍ଥିର ହେଲା ।

(୧) ଅନ୍ୟାନ୍ୟ ପ୍ରସଙ୍ଗ ଆଲୋଚନା ଅବସରରେ ମହାସଚିବ ଚଳିତ ବର୍ଷ ଓଡିଶା ପ୍ରଦେଶ ଗଠନ ଓ ଉତ୍କଳ ସମ୍ମିଳନୀ ପାଇଁ ଅତି ପ୍ରଶଂସନୀୟ କାର୍ଯ୍ୟ କରିଥିବା ଖଲ୍ଲିକୋଟ ରାଜା ସାହେବ ସ୍ୱର୍ଗତ ରାମଚନ୍ଦ୍ର ମର୍ଦ୍ଦରାଜ ଦେବଙ୍କର ଶତବାର୍ଷିକୀ ପାଳନ ପାଇଁ ପ୍ରସ୍ତାବ ଦେଇଥିଲେ । ରାଜ୍ୟବାସୀ ଓ ସମ୍ମିଳନୀ ତାହା ପାଳନ କରିବା ପାଇଁ ସ୍ଥିର ହେଲା ।

(୨) କେନ୍ଦ୍ରାପଡା ଜିଲ୍ଲା ଉପକୂଳବର୍ତ୍ତୀ ଅଞ୍ଚଳରେ ବଙ୍ଗଳାଦେଶୀ ଅନୁପ୍ରବେଶ ସମ୍ପର୍କରେ ସରକାରଙ୍କର ଦୃଷ୍ଟି ଆକର୍ଷଣ କରିବା ପାଇଁ ପ୍ରସ୍ତାବ ଗୃହୀତ ହେଲା ।

(୩) ପ୍ରସ୍ତାବିତ କୋଇଲା ପ୍ରକଳ୍ପ ପାରାଦ୍ୱୀପରୁ ବିଶାଖାପାଟଣାକୁ ସ୍ଥାନାନ୍ତର, ନୂଆପଡା-ଗୁଣୁପୁର ରେଳପଥ ପାଇଁ ଚଳିତ ରେଳ ବଜେଟ୍‌ରେ ମାତ୍ର ଏକ ହଜାର ଟଙ୍କା ବ୍ୟୟ ବରାଦ, ରେଳ ବଜେଟ୍‌ରେ ୧୬ଟି ନୂତନ ଟ୍ରେନ୍ ଚଳାଚଳ ପ୍ରସ୍ତାବରୁ ଓଡିଶା ବାଦ ପଡିବା ଆଦି କେନ୍ଦ୍ରୀୟ ପ୍ରକଳ୍ପ ଗୁଡିକର କାର୍ଯ୍ୟକାରିତାରେ ଓଡିଶା ପ୍ରତି ଚରମ ଅବହେଳା ଓ ବୈମାତୃକଭାବ ହେତୁ ଦୃଢ଼ ପ୍ରତିବାଦ କରାଯାଇ ପ୍ରସ୍ତାବ ଗୃହୀତ ହୋଇଥିଲା । ଏ ସମ୍ପର୍କରେ ସରକାରଙ୍କର ଦୃଷ୍ଟି ଆକର୍ଷଣ କରାଯିବା ନିମନ୍ତେ ସ୍ଥିର ହେଲା ।

ପରିଶେଷରେ ସଭାପତିଙ୍କୁ ଧନ୍ୟବାଦ ଜଣାଇ ସଭା ସାଙ୍ଗ ହେଲା ।

| | | |
|---|---|---|
| ଗୋପାଳକୃଷ୍ଣ ଶ୍ରୀଚନ୍ଦନ | ବସନ୍ତ କୁମାର ପାଣିଗ୍ରାହୀ | ହରିଶ୍ଚନ୍ଦ୍ର ବକ୍ସିପାତ୍ର |
| ସଚିବ | ମହାସଚିବ | ସଭାପତି |

## ତା-୮-୮-୯୯ ରବିବାର ପୂର୍ବାହ୍ନ ଘ ୧୦:୩୦ମି. ସମୟରେ ଅନୁଷ୍ଠିତ
## କାର୍ଯ୍ୟ ନିର୍ବାହୀ ସମିତି ବୈଠକ ବିବରଣୀ

ଉପସ୍ଥିତ ସଭ୍ୟ :

(୧) ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର (୨) ପଦ୍ମଚରଣ ନାୟକ (୩) ଆଚାର୍ଯ୍ୟ ଭାବାନନ୍ଦ (୪) ରବିନାରାୟଣ ଦାଶ (୫) ସିଦ୍ଧାର୍ଥ ଦାଶ (୬) ଅରବିନ୍ଦ ପଟ୍ଟନାୟକ (୭) ବସନ୍ତ କୁମାର ପାଣିଗ୍ରାହୀ (୮) କୈଳାସ ଆଚାର୍ଯ୍ୟ (୯) ଶ୍ରୀଚରଣ ସ୍ୱାଇଁ (୧୦) ଗୁରୁପ୍ରସାଦ ମହାନ୍ତି (୧୧) ଅନ୍ନପୂର୍ଣ୍ଣା ମିଶ୍ର (୧୨) ଗୋପାଳକୃଷ୍ଣ ଶ୍ରୀଚନ୍ଦନ (୧୩) ସାତକଡି ହୋତା

ସଭାପତି ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ସଭାପତିତ୍ୱରେ ବୈଠକ ଆରମ୍ଭ ହୋଇଥିଲା ।

୧. ଆରମ୍ଭରେ କାର୍ଯ୍ୟ ନିର୍ବାହୀ ସମିତିର ପୂର୍ବତନ ସଦସ୍ୟ ସ୍ୱର୍ଗତ ଜୟଦେବ ପଣ୍ଡାଙ୍କ ଆତ୍ମାର ସଦ୍‌ଗତି କାମନା କରି ଦୁଇ ମିନିଟ୍ ନୀରବ ପ୍ରାର୍ଥନା କରାଯାଇଥିଲା ।

୨. ଗତ ବୈଠକର ବିବରଣୀ ପାଠ କରାଯାଇ ଦୃଢ଼ୀକୃତ ହେବା ସାଙ୍ଗକୁ କାର୍ଯ୍ୟାନୁଷ୍ଠାନ ଉପରେ ସମୀକ୍ଷା କରାଯାଇଥିଲା ।

୩. ଗତଥରର ଅସମ୍ପୂର୍ଣ୍ଣ ଆଲୋଚନା ଯଥା 'ସମ୍ମିଳନୀ ହିସାବ ଏକୀକରଣ ଓ ସମୀକ୍ଷା ବ୍ୟବସ୍ଥା' ଆଜିର ଆଲୋଚନା ସୂଚୀ ସହ ମିଳାଇ ସମୀକ୍ଷା କରାଯାଇଥିଲା । ମହାସଚିବ ବ୍ରହ୍ମପୁରରେ ସେ ରଖିଥିବା ହିସାବ ସହ ଭୁବନେଶ୍ୱର କାର୍ଯ୍ୟାଳୟ ହିସାବ ମିଶାଇ ଗତ ନଭେମ୍ବର ୧୯୯୮ ପର୍ଯ୍ୟନ୍ତ ଏକ ହିସାବ ଫର୍ଦ୍ଦ ଦେଇଥିଲେ । ତାହାକୁ ୧୯୯୮-୯୯ ଆର୍ଥିକ ବର୍ଷ ଅର୍ଥାତ୍ ୩୧ ମାର୍ଚ୍ଚ ୧୯୯୯ ପର୍ଯ୍ୟନ୍ତ ଅଦ୍ୟତନ କରି ସମୀକ୍ଷା କରାଇବା ଓ ଆଗାମୀ ସାଧାରଣ ପରିଷଦରେ ପେଶ୍ ହେବା ପାଇଁ ପ୍ରସ୍ତୁତ କରି ରଖିବାକୁ ସ୍ଥିର ହେଲା ।

୪. ସ୍ୱର୍ଗତ ନବକିଶୋର ଦାସଙ୍କ ପ୍ରଣୀତ 'ଉତ୍କଳ ଗୌରବ – ମଧୁସୂଦନ' ପୁସ୍ତକର ପ୍ରକାଶନ ଅଗ୍ରଗତି, ଆଦାୟ ଅର୍ଥ (୩୮ ହଜାର ଟଙ୍କା) ଏବଂ ଖର୍ଚ୍ଚର ଏକ ସଂକ୍ଷିପ୍ତ ବିବରଣୀ ମୌଖିକ ଭାବେ ଛପା ଦାୟିତ୍ୱରେ ଥିବା ସଭ୍ୟ ଶ୍ରୀଯୁକ୍ତ ପଦ୍ମଚରଣ ନାୟକ ଦେଇଥିଲେ । ଏହାର ଆୟ ବ୍ୟୟ ବିବରଣୀ ପ୍ରସ୍ତୁତ କରି ପ୍ରଦାନ କରିବାକୁ ଶ୍ରୀଯୁକ୍ତ ନାୟକଙ୍କୁ ଅନୁରୋଧ କରାଗଲା । ଆଗ୍ରହୀ ଶିକ୍ଷାନୁଷ୍ଠାନ ଓ ବ୍ୟକ୍ତି ବିଶେଷଙ୍କୁ ରିହାତି ମୂଲ୍ୟ ୮୦ ଟଙ୍କାରେ (ସଚିବ ଉଚ୍ଚଶିକ୍ଷା ବିଭାଗକୁ ଲେଖିଥିବା ପତ୍ର ପ୍ରକାରେ) ବିକ୍ରି କରିବାକୁ ସ୍ଥିର ହେଲା । ଏ ବିଷୟରେ ଉଚ୍ଚ ଶିକ୍ଷାବିଭାଗ ସହ ପ୍ରତ୍ୟକ୍ଷ ସଂପର୍କ ରଖି ଏହାକୁ କାର୍ଯ୍ୟକାରୀ କରିବାକୁ ସ୍ଥିରହେଲା ।

୫. କାର୍ଯ୍ୟାଳୟ ଘର ପରିବର୍ତ୍ତନ ଏବଂ ଭଡା ରିହାତି ପାଇଁ ରାଜ୍ୟ ସରକାରଙ୍କୁ ଦିଆଯାଇଥିବା ଦରଖାସ୍ତ ସଂପର୍କରେ ତ୍ୱରାନ୍ୱିତ କାର୍ଯ୍ୟାନୁଷ୍ଠାନ ନିମନ୍ତେ ଶ୍ରୀ ପଦ୍ମଚରଣ ନାୟକ ଦୃଷ୍ଟି ଦେବାକୁ ଅନୁରୋଧ କରାଗଲା ।

୬. କୋଷାଧ୍ୟକ୍ଷ ଡକ୍ଟର ଭାବାଗ୍ରାହୀ ମିଶ୍ର ଇସ୍ତଫା ଦେଇ ଥିବାରୁ ଏବଂ ଆଗକୁ ସାଧାରଣ ପରିଷଦ ଗଠିତ ହୋଇ କର୍ମକର୍ତ୍ତା ନିର୍ବାଚନ ହେବାକୁ ଥିବାରୁ ସଭାପତି ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର କୋଷାଧ୍ୟକ୍ଷ ଦାୟିତ୍ୱ ତୁଲାଇବା ପାଇଁ ପ୍ରସ୍ତାବ ଗୃହୀତ ହେଲା । ଏହି ବ୍ୟବସ୍ଥା ଆଗାମୀ ନିର୍ବାଚିତ କୋଷାଧ୍ୟକ୍ଷ ହେବା ପର୍ଯ୍ୟନ୍ତ ବଳବତ୍ତର ରହିବ । କୋଷାଧ୍ୟକ୍ଷଙ୍କୁ ଦୈନନ୍ଦିନ ହିସାବ ରକ୍ଷଣାବେକ୍ଷଣ କରିବାରେ ସଚିବ ଶ୍ରୀଚନ୍ଦନ ସାହାଯ୍ୟ କରିବେ ବୋଲି ପ୍ରସ୍ତାବ ଗୃହୀତ ହେଲା । ଏହି ପ୍ରସ୍ତାବକୁ 'ଓଡିଆ ରାଜ୍ୟ ସମବାୟ ବ୍ୟାଙ୍କ ଲିଃ'ଙ୍କୁ ଜଣାଇ ଦେବାକୁ ସ୍ଥିର ହେଲା ।

୭. ବ୍ରହ୍ମପୁରରେ ଆଗାମୀ ସେପ୍ଟେମ୍ବର ୪ ଓ ୫ ତାରିଖରେ ସ୍ୱତନ୍ତ୍ର ସାଧାରଣ ଅଧିବେଶନ ବସି ପ୍ରଥମେ ସମ୍ବିଧାନ ସଂଶୋଧନ ଗୃହୀତ ହେବା ସ୍ଥିର ହେଲା । ଦ୍ୱିତୀୟ ପର୍ଯ୍ୟାୟରେ ଆଉଥରେ ଆଗକୁ ଅଧିବେଶନ ଆହୂତ ହୋଇ ପରିଷଦ ଗଠନ ତଥା ନିର୍ବାଚନ ଅନୁଷ୍ଠିତ ହେବା ନିମନ୍ତେ ପ୍ରସ୍ତାବ ଗୃହୀତ ହେଲା । ସମ୍ବିଧାନ ସଂଶୋଧନ ଚିଠା ଆଗାମୀ ଅଗଷ୍ଟ ୨୫ ମଧ୍ୟରେ ସଭ୍ୟମାନଙ୍କ ମଧ୍ୟରେ ବଣ୍ଟନ କରିବା ପାଇଁ ମହାସଚିବ ପଦକ୍ଷେପ ନେବାକୁ ଅନୁରୋଧ କରାଗଲା । ବିଚ୍ଛିନ୍ନାଞ୍ଚଳ ବିଶେଷତଃ ବିହାରର ଓଡିଆ ଛାତ୍ରଛାତ୍ରୀଙ୍କୁ ପାଠ୍ୟ ପୁସ୍ତକ ଯୋଗାଇବା ବିଷୟରେ ସମୀକ୍ଷା କରାଯାଇଥିଲା । ଡ: ଗୁରୁପ୍ରସାଦ ମହାନ୍ତିଙ୍କ ନେତୃତ୍ୱରେ ଶେଷ ପର୍ଯ୍ୟାୟ ପୁସ୍ତକ ବଣ୍ଟନ କାର୍ଯ୍ୟକ୍ରମ ସମାହିତ ହେବାକୁ ଯାଉଛି ବୋଲି ଆଲୋଚନାରୁ ଜଣାଗଲା ।

୮. 'ଉତ୍କଳ ସମ୍ମିଳନୀ ସମାଚାର' ଦଶହରା ପୂଜା ସମୟକୁ ପ୍ରକାଶିତ ହେବା ପାଇଁ ନିଷ୍ପତ୍ତି ନିଆଗଲା । ଏଥରର ପ୍ରକାଶନ ଖର୍ଚ୍ଚ ତୁଲାଇବା ପାଇଁ ଭୁବନେଶ୍ୱର ଶାଖା ପାଣ୍ଠି ବ୍ୟବସ୍ଥା କରିଦେବାକୁ ଶାଖା ସଭାପତି ଓ ସଚିବ ସମ୍ମତି ପ୍ରଦାନ କରିବାରୁ ସେମାନଙ୍କୁ ଧନ୍ୟବାଦ ଜ୍ଞାପନ କରାଗଲା । ଏହି ରୂପେ ଆଗାମୀ ସଂଖ୍ୟା ଗୁଡିକୁ ପ୍ରକାଶନ ପାଇଁ ଅର୍ଥ ଯୋଗାଇ ଦେବା ନିମନ୍ତେ ଅନ୍ୟ ଶାଖାମାନଙ୍କୁ ସମାଚାରର ପରିଚାଳନା ସଂପାଦକ ଅନୁରୋଧ କରିବାକୁ ପ୍ରସ୍ତାବ ଗୃହୀତ ହେଲା ।

୯. 'କଳିଙ୍ଗ ସମ୍ରାଟ ଖାରବେଳ' ସଂକଳନ ପୁସ୍ତକ ବଦାନ୍ୟ ବ୍ୟକ୍ତିଙ୍କଠାରୁ ଅର୍ଥ ସଂଗ୍ରହ କରି ଛପାଇବା ପାଇଁ ସ୍ଥିର ହେଲା । ବହି ପ୍ରକାଶନ ପରେ ଅର୍ଥ ପ୍ରଦାନକାରୀ ସଦାଶୟ ବ୍ୟକ୍ତିମାନଙ୍କୁ ପୁସ୍ତକ ଆକାରରେ ସେମାନଙ୍କର ଅର୍ଥ ଫେରାଇ ଦେବାପାଇଁ ନିଷ୍ପତ୍ତି ନିଆଗଲା । ପ୍ରକାଶନ ଦାୟିତ୍ୱରେ ଆଚାର୍ଯ୍ୟ ଭାବାନନ୍ଦ, ସଚିବ ଶ୍ରୀଚନ୍ଦନ ଓ ଆଜୀବନ

ସଭ୍ୟ ଡ: ରବିନାରାୟଣ ଦାଶ ରହିବା ପାଇଁ ସ୍ଥିର ହେଲା । ପ୍ରକାଶନ ପରେ ସମୟ ଥିଲେ ରାଜା ରାମମୋହନ ରାୟ ଲାଇବ୍ରେରୀ ଫାଉଣ୍ଡେସନକୁ ପୁସ୍ତକ ଯୋଗାଇ ଦେବା ନିମନ୍ତେ ଦରଖାସ୍ତ କରିବାକୁ ପ୍ରସ୍ତାବ ଗ୍ରହଣ କରାଗଲା ।

୧୦.'ଓଡିଆ ଅଧ୍ୟୟନ କେନ୍ଦ୍ର' ନିର୍ଦ୍ଦେଶକଙ୍କ ଦ୍ୱାରା ପ୍ରସ୍ତାବିତ 'ଓଡିଆ ଶିକ୍ଷା ପତ୍ର ବିନିମୟ କାର୍ଯ୍ୟକ୍ରମ' ଉପରେ ସୁବିସ୍ତୃତ ଆଲୋଚନା ହୋଇ ଏହାର (ଚଳିତ ଶିକ୍ଷା ବର୍ଷଠାରୁ) କାର୍ଯ୍ୟକାରିତା ନିମନ୍ତେ ୫ ହଜାର ଟଙ୍କା ବ୍ୟବସ୍ଥା କରିବା ପାଇଁ ସ୍ଥିର ହେଲା । ମହାସଚିବ ଏହି ଅର୍ଥ ବ୍ୟବସ୍ଥା କରିବା ପାଇଁ ସମ୍ମତି ଦେଲେ ।

ଏହି କାର୍ଯ୍ୟକ୍ରମ ସଫଳ ଭାବେ କାର୍ଯ୍ୟକାରୀ ହେଲେ ଏଥିପାଇଁ ସ୍ୱତନ୍ତ୍ର ବ୍ୟାଙ୍କ୍ ଆକାଉଣ୍ଟ ଖୋଲି ପାସ୍ ବହିରେ ଟଙ୍କା ଜମା ରଖିବାର ଆବଶ୍ୟକତା ଉପଲବ୍ଧି କରାଗଲା । ସେପରି ଅବସ୍ଥା ଆସିଲେ, ସ୍ୱତନ୍ତ୍ର ବ୍ୟାଙ୍କ୍ ଆକାଉଣ୍ଟ 'ଓଡିଆ ଅଧ୍ୟୟନ କେନ୍ଦ୍ର' ପରିଚାଳନା କମିଟି ଖୋଲି ପାରନ୍ତି ବୋଲି ନୀତିଗତ ଭାବେ ନିଷ୍ପତ୍ତି ନିଆଗଲା ।

୧୧.(କ) ଅନ୍ୟାନ୍ୟ ଆଲୋଚନା ଚାଲିଥିବା ସମୟରେ ବୈଠକରେ ଉପସ୍ଥିତ ଆଜୀବନ ସଭ୍ୟ ଶ୍ରୀ ସିଦ୍ଧାର୍ଥ ଦାଶ 'ଉତ୍କଳ ସମ୍ମିଳନୀ ସମାଚାର'ର ନିୟମିତ ପ୍ରକାଶନ ପାଇଁ ବିଜ୍ଞାପନ ଓ ବାର୍ଷିକ ଦେୟ ଆଦାୟ ଦିଗରେ ସହାୟତା କରିବେ ବୋଲି ସ୍ୱେଚ୍ଛାରେ ସମ୍ମତି ଦେଇଥିଲେ ।

(ଖ) ତାଙ୍କର ଆବାହକତ୍ୱରେ ଭୁବନେଶ୍ୱରସ୍ଥ ବ୍ୟବସାୟୀ ଅନୁଷ୍ଠାନ ଗୁଡିକର ନାମ ଫଳକ ଓ ବିଜ୍ଞାପନ ଫଳକ ଓଡିଆରେ ଲେଖିବା ପାଇଁ ଏକ ପ୍ରତିନିଧି ମଣ୍ଡଳୀ ସଂପୃକ୍ତ ଅନୁଷ୍ଠାନକୁ ପ୍ରବର୍ତ୍ତନା ଦେବାକୁ ଭେଟିବା ପାଇଁ ସ୍ଥିର ହେଲା ।

୧୨.ୟୁକୋ ବ୍ୟାଙ୍କ୍ର ଭୁବନେଶ୍ୱରସ୍ଥ ଆଞ୍ଚଳିକ ମୁଖ୍ୟ କାର୍ଯ୍ୟାଳୟକୁ ଅନ୍ୟତ୍ର ଉଠାଇ ଦେବା ପରିକଳ୍ପନାର ଦୃଢ଼ ପ୍ରତିବାଦ କରାଯାଇ ସରକାର ଓ ସଂପୃକ୍ତ କର୍ତ୍ତୃପକ୍ଷଙ୍କୁ ଏପରି ପଦକ୍ଷେପକୁ ବନ୍ଦ କରିବା ନିମନ୍ତେ ପତ୍ର ଲେଖିବାକୁ ସର୍ବସମ୍ମତ ପ୍ରସ୍ତାବ ଗୃହୀତ ହେଲା । ଏହି ବିସ୍ତୃତ ପ୍ରସ୍ତାବ ଖବର କାଗଜ ମାଧ୍ୟମରେ ପ୍ରକାଶ କରିବାର ଜରୁରୀ ଆବଶ୍ୟକତା ଦୃଷ୍ଟିରୁ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ସ୍ଥିରହେଲା ।

ପରିଶେଷରେ ସଭାପତିଙ୍କୁ ଧନ୍ୟବାଦ ଜଣାଇ ସଭା ସାଙ୍ଗ ହେଲା ।

| | | |
|---|---|---|
| ଗୋପାଳକୃଷ୍ଣ ଶ୍ରୀଚନ୍ଦନ | ବସନ୍ତ କୁମାର ପାଣିଗ୍ରାହୀ | ହରିଶ୍ଚନ୍ଦ୍ର ବକ୍ସିପାତ୍ର |
| ସଚିବ | ମହାସଚିବ | ସଭାପତି |

## ତା-୨୭-୨-୨୦୦୦ ରବିବାର ଅପରାହ୍ନ ତିନି ଘଣ୍ଟା ସମୟରେ ଭୁବନେଶ୍ୱର ସମ୍ମିଳନୀ କାର୍ଯ୍ୟାଳୟଠାରେ ଅନୁଷ୍ଠିତ କାର୍ଯ୍ୟ ନିର୍ବାହୀ ସମିତି ବୈଠକ ବିବରଣୀ

ଉପସ୍ଥିତ ସଭ୍ୟ :

(୧) ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର (୨) ହରିହର ବାହିନୀପତି (୩) ଶ୍ରୀଚରଣ ସ୍ୱାଇଁ (୪) ଗୋପାଳକୃଷ୍ଣ ଶ୍ରୀଚନ୍ଦନ (୫) କୈଳାସ ଆଚାର୍ଯ୍ୟ (୬) ଅରବିନ୍ଦ ପଟ୍ଟନାୟକ (୭) ଇଂ ଅମରେନ୍ଦ୍ର କୁମାର ଦାସ (୮) ଗୁରୁପ୍ରସାଦ ମହାନ୍ତି (୯) ଦେବ ମହାପାତ୍ର (୧୦) ନରେନ୍ଦ୍ର କୁମାର ସାହୁ (୧୧) ଅନ୍ନପୂର୍ଣ୍ଣା ମିଶ୍ର (୧୨) ବସନ୍ତ କୁମାର ପାଣିଗ୍ରାହୀ (୧୩) ପଦ୍ମଚରଣ ନାୟକ ।

ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ସଭାପତିତ୍ୱରେ ବୈଠକ ଅନୁଷ୍ଠିତ ହୋଇଥିଲା । ବୈଠକ ଆରମ୍ଭରେ ଇତି ମଧ୍ୟରେ ପରଲୋକ ଗମନ କରିଥିବା ଓଡିଶାର ସାରସ୍ୱତ ବରପୁତ୍ର ପଦ୍ମଶ୍ରୀ ରାଧାମୋହନ ଗଡନାୟକ, ପ୍ରଗତିବାଦୀର ସମ୍ପାଦକ ପ୍ରଦ୍ୟୁମ୍ନ କିଶୋର ବଳ, ପ୍ରଫେସର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ), ନାଟ୍ୟକାର ଭଞ୍ଜ କିଶୋର ପଟ୍ଟନାୟକ ଏବଂ ପ୍ରଫେସର ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତାଙ୍କ ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜଣାଇ ସ୍ୱର୍ଗତ ଆତ୍ମାର ସଦ୍‌ଗତି ନିମନ୍ତେ ଏକ ମିନିଟ୍ ନୀରବ ପ୍ରାର୍ଥନା କରାଯାଇଥିଲା ।

ଗତ ୮-୮-୯୯ ବୈଠକର ବିବରଣୀ ପାଠ କରାଯାଇ ତାହା ଠିକ୍ ଭାବେ ଲିପିବଦ୍ଧ ହୋଇଥିବାରୁ ଦୃଢ଼ୀକୃତ ହୋଇଥିଲା ଏବଂ ଏଥିରେ ଗୃହୀତ ପ୍ରସ୍ତାବ ଗୁଡିକ ଉପରେ କାର୍ଯ୍ୟାନୁଷ୍ଠାନର ସମୀକ୍ଷା କରାଯାଇଥିଲା ।

୧. ନବକିଶୋର ଦାସଙ୍କ ପ୍ରଣୀତ 'ଉତ୍କଳ ଗୌରବ ମଧୁସୂଦନ' ପୁସ୍ତକର ପୁନଃମୁଦ୍ରଣ ସମ୍ପର୍କୀୟ ଆୟ ବ୍ୟୟ ହିସାବ ଫର୍ଦ୍ଦ ଦେବା ପାଇଁ ପ୍ରକାଶନ ଓ ମୁଦ୍ରଣ ଦାୟିତ୍ୱରେ ଥିବା ସଭ୍ୟ ଶ୍ରୀଯୁକ୍ତ ପଦ୍ମଚରଣ ନାୟକଙ୍କୁ ଅନୁରୋଧ କରାଗଲା । ଆସନ୍ତା କାର୍ଯ୍ୟକାରି ସମିତି ବୈଠକରେ ତାହା ସେ ଉପସ୍ଥାପିତ କରିବା ପାଇଁ ଅନୁରୋଧ କରାଗଲା ।

୨. ସମ୍ମିଳନୀର ବାର୍ଷିକ ଆୟ ବ୍ୟୟ ସମ୍ପର୍କୀୟ ସମୀକ୍ଷା କରାଯାଇ ସ୍ଥିର ହେଲା ଯେ - ଆଗାମୀ ମାର୍ଚ୍ଚ ମାସରେ ଏକ କାର୍ଯ୍ୟ ନିର୍ବାହୀ ସମିତି ବୈଠକ ଡାକି ଗତ ବର୍ଷ ଗୁଡିକର ବାର୍ଷିକ ହିସାବ ଫର୍ଦ୍ଦ ପେଶ୍ ହୋଇ ଆଲୋଚିତ ହେବ ।

କେନ୍ଦ୍ର କାର୍ଯ୍ୟାଳୟ ତରଫରୁ ରସିଦ୍ ବହି ଶାଖାମାନଙ୍କୁ ଦିଆଯିବ । ଚାନ୍ଦା ଓ ପାଣ୍ଠି ଉଠାଇଲା ବେଳେ ଶାଖାମାନେ ସେହି ରସିଦ୍ ବହି ବ୍ୟବହାର କରିବେ ।

ଆର୍ଥିକ ବର୍ଷ ଶେଷରେ ସମସ୍ତ ଶାଖା ଆୟ ବ୍ୟୟ ହିସାବ ଫର୍ଦ୍ଦ ରାଜ୍ୟ କାର୍ଯ୍ୟାଳୟକୁ

ଜଣାଇବେ । ବ୍ରହ୍ମପୁର ଓ ଭୁବନେଶ୍ୱର ହିସାବ ସବୁ ଏକୀକରଣ କରାଯିବ । ସେଥିପାଇଁ ସଭାପତି, ସାଧାରଣ ସମ୍ପାଦକ ଓ ସମ୍ପାଦକ ପଦକ୍ଷେପ ନେବେ ।

୩. 'ଉତ୍କଳ ସମ୍ମିଳନୀ ସମାଚର'ର ରୀତିମତ ପ୍ରକାଶନ ସମ୍ପର୍କରେ ସମ୍ପାଦନା ମଣ୍ଡଳୀ ବସି ପ୍ରକାଶନ ବ୍ୟବସ୍ଥା କରିବେ ବୋଲି ନିଷ୍ପତ୍ତି ନିଆଗଲା । ଆସନ୍ତା ଏପ୍ରିଲ ମାସରେ ସ୍ୱତନ୍ତ୍ର ପ୍ରଦେଶ ଗଠନରେ ବିଷୁବ ସଂଖ୍ୟା ଭାବରେ ତାହା ପ୍ରକାଶିତ ହେବ ।

୪. ଆଗାମୀ ଓଡିଶା ଦିବସ (ଅପ୍ରେଲ୍ ପହିଲା ୨୦୦୦) ସମସ୍ତ ଜିଲ୍ଲାରେ ପାଳନ କରାଯିବ ଏବଂ ରାଜଧାନୀ, ଭୁବନେଶ୍ୱରରେ ମଧ୍ୟ ପାଳନ କରାଯିବା ପାଇଁ ସ୍ଥିର ହେଲା । ଶୋଭାଯାତ୍ରା, ବରପୁତ୍ରଙ୍କ ପ୍ରତିମୂର୍ତ୍ତି ମାଲ୍ୟାର୍ପଣ, ଆଲୋଚନା ସଭା ଦ୍ୱାରା ଏହି ଜାତୀୟ ଦିବସଟି ପାଳନ କରାଯିବ । ୫୦୦୦/ ୧୦୦୦୦ ପ୍ରଚାର ପତ୍ର ବଣ୍ଟନ କରାଯାଇ ସମ୍ମିଳନୀର ଲକ୍ଷ୍ୟ ଓ ଆଭିମୁଖ୍ୟ ଲୋକଙ୍କ ନିକଟରେ ପହଞ୍ଚାଇ ଦେବା ବ୍ୟବସ୍ଥା ହେବ । ସଭାକୁ ରାଜନୈତିକ ନେତା ଏବଂ ସମଭାବାପନ୍ନ ଅନୁଷ୍ଠାନମାନଙ୍କୁ ଅଂଶ ଗ୍ରହଣ କରିବା ନିମନ୍ତେ ନିମନ୍ତ୍ରଣ କରାଯିବାକୁ ସ୍ଥିର ହେଲା ।

୫. ସମ୍ବିଧାନ ସଂଶୋଧନ, ପରିଷଦ ଗଠନ, ଏବଂ ଅନ୍ୟାନ୍ୟ ଆନୁସଙ୍ଗିକ କାର୍ଯ୍ୟକ୍ରମ ସମ୍ପନ୍ନ ହେଲାପରେ ଆଗାମୀ ବୈଠକରେ ବାର୍ଷିକ ଅଧିବେଶନର ସ୍ଥାନ ଓ ଦିନ ଧାର୍ଯ୍ୟ ପାଇଁ ଆଲୋଚନା ହୋଇ ନିଷ୍ପତ୍ତି ନିଆଯିବାକୁ ସ୍ଥିର ହେଲା ।

୬. ସାଂପ୍ରତିକ ଓଡିଶାରେ ଓଡିଆ ଭାଷା-ସଂସ୍କୃତି ସୁରକ୍ଷା ସମ୍ପର୍କରେ ଆଲୋଚନା କରାଯାଇ ନିମ୍ନଲିଖିତ ପ୍ରସ୍ତାବମାନ ଗୃହୀତ ହେଲା ।

(୧) ନିକଟରେ ସମ୍ପନ୍ନ ହୋଇଥିବା ବିଧାନ ସଭା ନିର୍ବାଚନ ସଭାମାନଙ୍କରେ ଭାରତୀୟ ଜନତା ପାର୍ଟି ଜାତୀୟ ସାଧାରଣ ସମ୍ପାଦକ ଶ୍ରୀ ଭେଙ୍କିଆ ନାଇଡୁ ଏବଂ ବରିଷ୍ଠ କଂଗ୍ରେସ ନେତା ଶ୍ରୀ ପ୍ରଣବ ମୁଖାର୍ଜୀ, ଓଡିଶାର ମୁଖ୍ୟମନ୍ତ୍ରୀ ହେବା ପାଇଁ ଓଡିଆ ଭାଷା ଜ୍ଞାନର ଆବଶ୍ୟକତା ଅପରିହାର୍ଯ୍ୟ ନୁହେଁ ଏବଂ ଓଡିଆ ଭାଷା ଜାଣି ନ ଥିବା ଜଣେ ନିର୍ବାଚିତ ବ୍ୟକ୍ତି ମୁଖ୍ୟମନ୍ତ୍ରୀ ହୋଇ ପାରିବେ ବୋଲି ଦେଇଥିବା ବକ୍ତବ୍ୟକୁ ରାଜ୍ୟ ବିରୋଧୀ ତଥା ଓଡିଆ ଜାତିପ୍ରତି ଅପମାନ ଜନକ ବୋଲି ନିନ୍ଦା କରାଗଲା ।

(୨) ନିର୍ବାଚନରେ ସଂଖ୍ୟା ଗରିଷ୍ଠତା ହାସଲ କରିଥିବା ମେଣ୍ଟର ଦଳପତି ମୁଖ୍ୟମନ୍ତ୍ରୀ ହେଲେ, ସେ ଓଡିଆ ଶିଖିବେ, ଓଡିଆ କହିବେ, ଓଡିଆରେ ସ୍ୱାକ୍ଷର କରିବେ, ଆଗାମୀ ଉତ୍କଳ ଦିବସରେ ଓଡିଆରେ ବାର୍ତ୍ତା ଓ ଉଦ୍‌ବୋଧନ ଦେବେ ଏବଂ ଓଡିଆ ଭାଷାରେ ସରକାରୀ ଫାଇଲ୍ କାମ କରିବେ ବୋଲି ସମ୍ମିଳନୀ ତରଫରୁ ଅନୁରୋଧ ଜଣାଇ ପତ୍ର ଲେଖାଯିବାକୁ ପ୍ରସ୍ତାବ ଗୃହୀତ ହେଲା ।

(୩) ନିକଟରେ ଇଂରାଜୀ ଲେଖକ କେ.ଏମ୍.ଜର୍ଜ ତାଙ୍କ ଲିଖିତ 'ଇଣ୍ଡିଆ ୧୦୦୦

ଟୁ ୨୦୦୦' ପୁସ୍ତକରେ 'ଓରିଆ ଇଜ୍ ଏ ୟଙ୍ଗର୍ ସିଷ୍ଟର ଅଫ୍ ବେଙ୍ଗଲୀ' ଲେଖିବା ସହ ଓଡିଆ ଭାଷା ସାହିତ୍ୟ ସମ୍ପର୍କରେ ଅକ୍ଷମଣୀୟ ତ୍ରୁଟିମାନ ଉକ୍ତ ପୁସ୍ତକରେ ପରିବେଷଣ କରି ଓଡିଆ ଜାତିକୁ ଅପମାନିତ କରିଛନ୍ତି । ତେଣୁ ଲେଖକ କେ.ଏମ୍.ଜର୍ଜ ତଥା ସଂପୃକ୍ତ ପ୍ରକାଶନ ସଂସ୍ଥାର ଘୋର୍ ନିନ୍ଦା କରାଯାଇ ଏକ ପ୍ରସ୍ତାବ ଗୃହୀତ ହେଲା ।

ଏତଦ୍‌ବ୍ୟତୀତ କେ.ଏମ୍.ଜର୍ଜଙ୍କୁ ସାତଦିନ ମଧ୍ୟରେ ତାଙ୍କର ଏତାଦୃଶ ଅପରାଧ ଓ ଅଜ୍ଞତା ପାଇଁ କ୍ଷମା ମାଗିବାକୁ ପତ୍ର ଲେଖାଯିବ । ଆଗାମୀ ୬-୩-୨୦୦୦ ଦିନ ଭୁବନେଶ୍ୱରସ୍ଥ ଏହି ପୁସ୍ତକ ପ୍ରକାଶନ ସଂସ୍ଥାର ସ୍ଥାନୀୟ କାର୍ଯ୍ୟାଳୟ ସମ୍ମୁଖରେ ବିକ୍ଷୋଭ ପ୍ରଦର୍ଶନ ପୂର୍ବକ (କରାଯାଇ) ସଂପୃକ୍ତ ବହି ଏବଂ ପ୍ରକାଶନ ସଂସ୍ଥାର ଖବର କାଗଜ ପୋଡାଯାଇ ଦୃଢ଼ ପ୍ରତିବାଦ ଜ୍ଞାପନ କରାଯିବ ।

ଏ ସମ୍ପର୍କରେ (ଏହି ପୁସ୍ତକର ବିକ୍ରୟ ବନ୍ଦ ଓ ବାଜ୍ୟାପ୍ତି ପାଇଁ) ଦୃଢ଼ କାର୍ଯ୍ୟାନୁଷ୍ଠାନ ନିମନ୍ତେ ରାଜ୍ୟ ମୁଖ୍ୟ ଶାସନ ସଚିବ ଓ ଘରୋଇ ବିଭାଗ ଶାସନ ସଚିବଙ୍କୁ ପତ୍ର ଲେଖିବାକୁ ସ୍ଥିର ହେଲା ।

(୪) ଗତ ୨୧-୨-୨୦୦୦ ଦିନ 'ଆନ୍ତର୍ଜାତିକ ମାତୃଭାଷା ଦିବସ' ପାଳନ ଉପଲକ୍ଷେ 'ଓଡିଆ ଭାଷା ବିକାଶ ପରିଷଦ' ତରଫରୁ ରାଉରକେଲା କଲ୍‌ଚରାଲ୍ ଏକାଡେମୀ ପରିସର୍ ମଧ୍ୟରେ ଅନୁଷ୍ଠିତ ସଭାରେ ଗୃହୀତ ପ୍ରସ୍ତାବ ଗୁଡିକ ପ୍ରତି ଦୃଢ଼ ସମର୍ଥନ ଜ୍ଞାପନ ପୂର୍ବକ ଏହାର ପ୍ରଶଂସା କରାଗଲା ।

୭. ପ୍ରସଙ୍ଗକ୍ରମେ ଚଳିତ କେନ୍ଦ୍ର ରେଳବାଇ ବଜେଟ୍ (୨୦୦୦-୨୦୦୧) ରେ ଓଡିଶା ପାଇଁ କୌଣସି ନୂଆ ରେଳଗାଡି ପ୍ରଚଳନ, ରେଳ ଲାଇନ୍ ପକାଇବା ଏବଂ ରେଳବାଇ ଉନ୍ନତିକରଣ ନିମନ୍ତେ ଆର୍ଥିକ ବ୍ୟବସ୍ଥାର ସୂଚନା ନ ଥିବାରୁ ସଭାପତି ଶ୍ରୀ ବକ୍ରିପାତ୍ରଙ୍କର "ଇଣ୍ଡିଆନ୍ ଏକ୍‌ପ୍ରେସ୍" ରେ ପ୍ରକାଶିତ ଏକ ପ୍ରତିବାଦ ମୂଳକ ବିବୃତ୍ତି ଉପରେ ଆଲୋଚନା କରାଯାଇ ଏହି ବଜେଟ୍‌ର ଘୋର ନିନ୍ଦା କରାଗଲା । ଏ ସମ୍ପର୍କରେ ସରକାର ଏବଂ ଓଡିଶାର ସାଂସଦ ତଥା କେନ୍ଦ୍ର ମନ୍ତ୍ରୀ ମଣ୍ଡଳରେ ଥିବା ସଭ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରି ପତ୍ର ଲେଖିବାକୁ ସ୍ଥିର ହେଲା ।

୮. ବିଚ୍ଛିନ୍ନାଞ୍ଚଳ ଜାମସେଦ୍‌ପୁରସ୍ଥ ଆଦିତ୍ୟପୁରରେ ସମ୍ମିଳନୀର ଏକ ସ୍ୱତନ୍ତ୍ର ଅଧିବେଶନ କରିବା ପାଇଁ ଏକ 'ମୌଖିକ ପ୍ରସ୍ତାବ' ଉପରେ ବିଚାର କରାଯାଇ ସ୍ଥିର ହେଲା; ବିଧିବଦ୍ଧ ଲିଖିତ ଅନୁରୋଧ ଆସିଲେ, ଏପରି ସ୍ୱତନ୍ତ୍ର ଅଧିବେଶନ କରିବା ପାଇଁ ପଦକ୍ଷେପ ନିଆଯିବ ।

୯. ଦାଶରଥି ପଟ୍ଟନାୟକ ଲାଇବ୍ରେରୀ ଟ୍ରଷ୍ଟ, ଉଦୟପୁର, ନୟାଗଡ ତରଫରୁ ଏହାର ସୁପରିଚାଳନା ଭାର ନେବା ସମ୍ପର୍କରେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ

ଆସିଥିବା ପତ୍ର ଉପରେ ଆଲୋଚନା କରାଯାଇ ସରକାରଙ୍କୁ ଏ ସମ୍ପର୍କରେ ଉଚିତ ପଦକ୍ଷେପ ନେବା ନିମନ୍ତେ ପତ୍ର ଲେଖିବାକୁ ସ୍ଥିର ହେଲା । ରାଜ୍ୟ ଅଭିଲେଖାଗାର କିମ୍ବା ରାଜ୍ୟ ମ୍ୟୁଜିୟମ୍ ଏହାର ତତ୍ତ୍ୱାବଧାନ ଦାୟିତ୍ୱ ନେଲେ, ଏହାର ସୁପରିଚାଳନା ହୋଇ ପାରିବ ବୋଲି ସର୍ବସମ୍ମତ ମତ ପ୍ରକାଶ ପାଇଥିଲା ।

୧୦. ଭୁବନେଶ୍ୱରରେ 'ପ୍ରାକୃତିକ ଚିକିତ୍ସା ମହାବିଦ୍ୟାଳୟ ଓ ଡାକ୍ତରଖାନା' ପ୍ରତିଷ୍ଠା ନିମନ୍ତେ ଜମି ଯୋଗାଣ ସମ୍ପର୍କରେ ଆସିଥିବା ପତ୍ର ଉପରେ ଆଲୋଚନା କରାଯାଇ ସରକାରଙ୍କ ସହ ଯୋଗାଯୋଗ କରିବାକୁ ସଭାରେ ଉପସ୍ଥିତ ଥିବା ସଂପୃକ୍ତ ସଂସ୍ଥାର ପ୍ରତିନିଧିଙ୍କୁ ପରାମର୍ଶ ଦିଆଗଲା । ୧୯୬୨ ରୁ ପଡୋଶୀ ଆନ୍ଧ୍ର ପ୍ରଦେଶରେ ଏପରି କଲେଜ ଓ ଚିକିତ୍ସାଳୟ ସ୍ଥାପିତ ହୋଇଥିବାରୁ ଏବଂ ଏଥିପାଇଁ ତତ୍କାଳୀନ ଆନ୍ଧ୍ର ସରକାର ଜମି ଯୋଗାଇ ଦେଇଥିବାରୁ ଆମ ରାଜ୍ୟରେ ମଧ୍ୟ ତଦ୍ରୂପ ପଦକ୍ଷେପ ନେବାକୁ ରାଜ୍ୟ ସରକାରଙ୍କଠାରେ ପେଶ୍ କରାଯାଇଥିବା ଆବେଦନ ପତ୍ର ପ୍ରତି ବୈଠକରେ ସର୍ବସମ୍ମତ ନୈତିକ ସମର୍ଥନ ଜ୍ଞାପନ କରାଯାଇଥିଲା ।

୧୧. ସମ୍ମିଳନୀ ତରଫରୁ ଗଜପତି କପିଳେନ୍ଦ୍ର ଦେବଙ୍କ ଉପରେ ଏକ ଗବେଷଣାତ୍ମକ ଆଲୋଚନା ଚକ୍ର କରାଇ ଏକ ପ୍ରମାଣିକ ଇତିହାସ ପୁସ୍ତକ ପ୍ରକାଶନ କରିବା ପାଇଁ ସ୍ଥିର ହେଲା । ଏ ଦିଗରେ ସଚିବ ଡ: ଶ୍ରୀଚନ୍ଦନ ଏବଂ ଆଜୀବନ ସଭ୍ୟ ଡ: ରବିନାରାୟଣ ଦାଶ ପଦକ୍ଷେପ ନେଇ ଆଗାମୀ ଦୁଇ ମାସ ମଧ୍ୟରେ ନିବନ୍ଧମାନ ଗବେଷକମାନଙ୍କଠାରୁ ସଂଗ୍ରହ କରି ଆଲୋଚନା ଚକ୍ର ଅନୁଷ୍ଠାନ କରାଇବାକୁ ଉଦ୍ୟମ କରିବେ ବୋଲି ସ୍ଥିର ହେଲା ।

୧୨. ଗତ ୨୮-୪-୧୯୯୯ ଦିନ ମଧୁବାବୁଙ୍କ ଜୟନ୍ତୀକୁ 'ସ୍ୱାଭିମାନ ଦିବସ' ରୂପେ ବିଛିନ୍ନାଞ୍ଚଳରେ (ଚାରୋଟି ସ୍ଥାନରେ) ଉତ୍କଳ ସମ୍ମିଳନୀ ଆନୁକୂଲ୍ୟରେ ପାଳନ କରିବା ପାଇଁ ରାଜ୍ୟ ସଂସ୍କୃତି ବିଭାଗ ସୂଚନା ଦେଇଥିଲେ ଏବଂ ପ୍ରତ୍ୟେକ ସ୍ଥାନରେ ପାଳନୋତ୍ସବ ବାବଦକୁ ଦଶ ହଜାର ଟଙ୍କା କରି ଅନୁଦାନ ଦେବେ ବୋଲି (ସମୟର ସ୍ୱଳ୍ପତା ଦୃଷ୍ଟିରୁ) ଫୋନ୍‌ରେ ମୌଖିକ ପ୍ରତିଶ୍ରୁତି ଦେଇଥିଲେ । 'ସ୍ୱାଭିମାନ ଦିବସ' ପାଳନ ପାଇଁ ସଭାପତି ଶ୍ରୀ ବଙ୍କିପାତ୍ର ମଧ୍ୟ ପ୍ରଦେଶ ରାୟପୁରରେ ଏବଂ ମହାସଚିବ ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ ଆନ୍ଧ୍ର ପ୍ରଦେଶ ମଞ୍ଜୁଷାରେ ପୂର୍ବରୁ ଉପସ୍ଥିତ ରହି ସମସ୍ତ ବ୍ୟବସ୍ଥା କରିଥିଲେ । ବିହାର ଓ ପଶ୍ଚିମ ବଙ୍ଗରେ ମଧ୍ୟ ଏହି ଦିବସ ପାଳନ ପାଇଁ ପ୍ରସ୍ତାବ ଗୃହୀତ ହୋଇଥିଲା । ଏ ସମ୍ପର୍କୀୟ ରିପୋର୍ଟ ସଂଗ୍ରହ କରି ସଂସ୍କୃତି ବିଭାଗକୁ କାର୍ଯ୍ୟକାରିତା ରିପୋର୍ଟ ପଠାଯିବା ପାଇଁ ସ୍ଥିର ହେଲା । ଏ ସମ୍ପର୍କୀୟ ଅନୁଦାନ ପ୍ରଦାନ ନିମନ୍ତେ ସରକାରଙ୍କୁ ଅନୁରୋଧ ଜଣାଇ ପ୍ରସ୍ତାବ ଗୃହୀତ ହୋଇଥିଲା ।

୧୩. ରାଜ୍ୟ ସରକାରଙ୍କ ସାଧାରଣ ପ୍ରଶାସନ ବିଭାଗ ଉତ୍କଳ ସମ୍ମିଳନୀକୁ ଦେଇଥିବା ଘରକୁ ଏକ ବର୍ଷ ପରିବର୍ତ୍ତେ ୩ ବର୍ଷ ପାଇଁ (୨୨-୯-୯୮ ରୁ ୨୧-୯-୨୦୦୧ ପର୍ଯ୍ୟନ୍ତ) ଭଡା ସୂତ୍ରରେ ଦେବା ନିମନ୍ତେ ଆଦେଶ ପ୍ରଦାନ କରିଥିବାରୁ ଧନ୍ୟବାଦ ଜ୍ଞାପନ କରାଗଲା ।

ପରିଶେଷରେ ସଭାପତିଙ୍କୁ ଧନ୍ୟବାଦ ଜଣାଇ ସଭା ସାଙ୍ଗ ହେଲା ।

| | | |
|---|---|---|
| ଗୋପାଳକୃଷ୍ଣ ଶ୍ରୀଚନ୍ଦନ | ବସନ୍ତ କୁମାର ପାଣିଗ୍ରାହୀ | ହରିଶ୍ଚନ୍ଦ୍ର ବକ୍ସିପାତ୍ର |
| ସଚିବ | ମହାସଚିବ | ସଭାପତି |

ବିଭିନ୍ନ ସମୟରେ ବହୁ ମୁଖ୍ୟ ପ୍ରଶ୍ନଗୁଡିକ ଉପରେ ସମ୍ମିଳନୀ ତରଫରୁ ଖବର ପଠାଇଲେ ମଧ୍ୟ ଖବରକାଗଜ ବା ଦୂରଦର୍ଶନ ଦ୍ୱାରା ସେ ଗୁଡିକ ପ୍ରଚାର ହେଉନାହିଁ । ଏହିଥିରୁ ଅନ୍ତତଃ ମୁଖ୍ୟ ପ୍ରଶ୍ନଗୁଡିକ ଉପରେ ଯଥା - ରେଳବାଇ, ଇଣ୍ଡିଆନ୍ ଏକ୍ସପ୍ରେସରେ ପ୍ରକାଶିତ ଓଡିଆ ଭାଷା ବିରୋଧୀ ଲେଖା, କପିଳେନ୍ଦ୍ର ଦେବଙ୍କ ଉପରେ ଆଲୋଚନା ଚକ୍ର ଏବଂ ଉତ୍କଳ ଦିବସ ପାଳନ ଲାଗି ଆହ୍ୱାନ ଇତ୍ୟାଦି ମୁଖ୍ୟ ସିଦ୍ଧାନ୍ତ ଗୁଡିକୁ ତୁରନ୍ତ ଖବର କାଗଜରେ ପ୍ରକାଶ କରିବାର ବ୍ୟବସ୍ଥା କରାଯିବା ଲାଗି ସ୍ଥିର ହେଲା ।

ବସନ୍ତ କୁମାର ପାଣିଗ୍ରାହୀ, ମହାସଚିବ — ହରିଶ୍ଚନ୍ଦ୍ର ବକ୍ସିପାତ୍ର, ସଭାପତି

## ତା-୩୧-୫-୨୦୦୦ ବୁଧବାର ଅପରାହ୍ନ ପାଞ୍ଚ ଘଣ୍ଟା ସମୟରେ ଭୁବନେଶ୍ୱର ସମ୍ମିଳନୀ କାର୍ଯ୍ୟାଳୟଠାରେ ଅନୁଷ୍ଠିତ କାର୍ଯ୍ୟ ନିର୍ବାହୀ ସମିତି ବୈଠକ ବିବରଣୀ

ଉପସ୍ଥିତ ସଭ୍ୟ :

(୧) ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର (୨) ଇଂ ଅମରେନ୍ଦ୍ର କୁମାର ଦାସ (୩) ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ (୪) ଗୋପାଳକୃଷ୍ଣ ଶ୍ରୀଚନ୍ଦନ (୫) ଶ୍ରୀଚରଣ ସ୍ୱାଇଁ (୬) ଆଚାର୍ଯ୍ୟ ଭାବାନନ୍ଦ (୭) ଅନ୍ନପୂର୍ଣ୍ଣା ମିଶ୍ର (୮) ହରିହର ବାହିନୀପତି (୯) ପଦ୍ମଚରଣ ନାୟକ ।

ସଭାପତି ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ସଭାପତିତ୍ୱରେ ବୈଠକ ଆରମ୍ଭ ହୋଇଥିଲା । ଉତ୍କଳ ସମ୍ମିଳନୀ ସଚିବ ମଞ୍ଜୁଷା ନିବାସୀ କୃଷ୍ଣଚନ୍ଦ୍ର ପଣ୍ଡାଙ୍କ ଆକସ୍ମିକ ବିୟୋଗରେ ଦୁଇ ମିନିଟ୍ ନୀରବ ପ୍ରାର୍ଥନା କରାଯାଇ ସ୍ୱର୍ଗତ ଆତ୍ମାର ସଦ୍‌ଗତି କାମନା କରାଯାଇଥିଲା ।

ଗତ ବୈଠକ ବିବରଣୀ ପାଠ କରାଯାଇ ଠିକ୍ ଥିବାରୁ ଦୃଢ଼ୀକୃତ କରାଯାଇଥିଲା । ବିଭିନ୍ନ ପ୍ରସ୍ତାବ ଉପରେ କାର୍ଯ୍ୟାନୁଷ୍ଠାନ ସମୀକ୍ଷା କରାଯାଇଥିଲା ।

୧. ୨୦୦୦-୨୦୦୧ କେନ୍ଦ୍ର ରେଳବାଇ ବଜେଟ୍ ସମ୍ପର୍କୀୟ ସପ୍ତମ ପ୍ରସ୍ତାବ ଉପରେ ସମୀକ୍ଷା କରାଯାଇ ନିଷ୍ପତ୍ତି ନିଆଗଲା ଆନ୍ଧ୍ର ପ୍ରଦେଶ ଏବଂ ଅନ୍ୟାନ୍ୟ ପଡୋଶୀ ରାଜ୍ୟରେ (ଉଦାହରଣ - ମଝି ଘରିଆଣୀ) ପ୍ରଚଳିତ ଓଡିଆ ନାମକୁ ବିକୃତ କରାଯାଇ ରେଳବାଇରେ ବ୍ୟବହାର କରାଯାଉଅଛି । ଐତିହ୍ୟ ସମ୍ପନ୍ନ ଏହି ନାମଗୁଡିକ ଠିକ୍‌ଭାବେ ଯେପରି ଲିପିବଦ୍ଧହୋଇ ବ୍ୟବହୃତ ହୁଏ, ସେଥିପ୍ରତି ପଦକ୍ଷେପ ନେବାପାଇଁ ରେଳବାଇ କର୍ତ୍ତୃପକ୍ଷଙ୍କୁ ଲେଖାଯିବାକୁ ସ୍ଥିରହେଲା ।

୨. କପିଳେନ୍ଦ୍ର ଦେବ ସେମିନାର୍‌ରେ ସଂଗୃହୀତ ପ୍ରବନ୍ଧ ଗୁଡିକ ପ୍ରଫେସର୍ ଭବାନୀ ଚରଣ ରାୟଙ୍କ ଦ୍ୱାରା ସମୀକ୍ଷା କରାଯାଇ ତାଙ୍କର ଅଭିମତ ସହ ପ୍ରକାଶ କରାଯିବାକୁ ସ୍ଥିରହେଲା ।

୩. ୧୯୯୯ ସ୍ୱାଭିମାନ ଦିବସ (ମଧୁ ଜୟନ୍ତୀ) ବିଚ୍ଛିନ୍ନାଞ୍ଚଳରେ ପାଳନ ପାଇଁ ସଂସ୍କୃତି ବିଭାଗ ମଞ୍ଜୁର କରିଥିବା ଅର୍ଥ, ଆବଶ୍ୟକ ରିପୋର୍ଟ ପ୍ରଦାନ କରି ଆଣିବା ପାଇଁ ସ୍ଥିର ହେଲା । ଆନ୍ଧ୍ର ପ୍ରଦେଶ (ମଞ୍ଜୁଷା), ମଧ୍ୟ ପ୍ରଦେଶ (ରାୟପୁର) ଏବଂ ବିହାର ଚକ୍ରଧରପୁର (ପୁରୁଣା ବସ୍ତି) ରେ ପାଳିତ ହୋଇଥିବାର ରିପୋର୍ଟ ମିଳିଛି । ପଶ୍ଚିମ ବଙ୍ଗରେ ଆଗାମୀ ଅଗଷ୍ଟ ୨୦୦୦ ମଧ୍ୟରେ ଏହି କାର୍ଯ୍ୟକ୍ରମ ପାଳନ ସରକାରଙ୍କୁ ଜଣାଇ ଦିଆଯିବ ଏବଂ ଏ ସମ୍ପର୍କୀୟ ଅନୁଦାନ ପ୍ରଦାନ କରିବା ନିମନ୍ତେ ଅନୁରୋଧ କରାଯିବ । ଏ ବିଷୟ ସଂସ୍କୃତି ବିଭାଗ ଏବଂ ସଂସ୍କୃତି ନିର୍ଦ୍ଦେଶାଳୟକୁ ଜଣାଇ ବିହିତ କାର୍ଯ୍ୟାନୁଷ୍ଠାନ ନିମନ୍ତେ ଅନୁରୋଧ କରିବାକୁ ସ୍ଥିର ହେଲା ।

୪. ଭୁବନେଶ୍ୱରରେ ସମ୍ମିଳନୀ କାର୍ଯ୍ୟାଳୟ ନିମନ୍ତେ ସରକାର ମଞ୍ଜୁର କରିଥିବା ତିନି ବର୍ଷିଆ ଚୁକ୍ତିପତ୍ର ରେଜେଷ୍ଟ୍ରି କରିବା ପାଇଁ ନିଷ୍ପତ୍ତି ନିଆଗଲା ଏବଂ ବକେୟା ଘରଭଡା ଦେଇଦେବା ପାଇଁ ସ୍ଥିର ହେଲା । ସରକାର ମାଗିଥିବା ଘର ଭଡା ସମ୍ପର୍କୀୟ ବିବରଣୀ ମଧ୍ୟ ଜଣାଇ ଦେବାକୁ ସ୍ଥିର ହେଲା । ଘରଭଡା ଛାଡ ନିମନ୍ତେ ମୁଖ୍ୟମନ୍ତ୍ରୀଙ୍କୁ କରାଯାଇଥିବା ଆବେଦନ ଉପରେ ପରବର୍ତ୍ତୀ (ସ୍ମାରକୀ) କାର୍ଯ୍ୟାନୁଷ୍ଠାନ ପାଇଁ ଚିଠି ଲେଖିବାକୁ ସ୍ଥିର ହେଲା । ସାଧାରଣ ପ୍ରଶାସନ ବିଭାଗ ସହ ଯୋଗାଯୋଗ କରି ଏ ଦିଗରେ ଅଗ୍ରଗତି ବୁଝିବାକୁ ସ୍ଥିର ହେଲା । ସେ ପର୍ଯ୍ୟନ୍ତ ଏଗ୍ରିମେଣ୍ଟ୍ ରେଜିଷ୍ଟ୍ରେସନ୍ ନ କରିବାକୁ ଅନୁରୋଧ କରାଯିବ ।

୫. ଆଗାମୀ ରଥଯାତ୍ରା ସମୟକୁ ସମାଚାର ପ୍ରକାଶ କରିବାକୁ ସ୍ଥିର ହେଲା । ଷଢ଼େଇକଳା-ଖରସୁଆଁ ବିଶେଷ ସଂଖ୍ୟା ଭାବେ ଏହା ପ୍ରକାଶ ପାଇବ ।

<u>ପ୍ରଥମ ପ୍ରସ୍ତାବ</u>

ମହାସଚିବ ସମ୍ମିଳନୀର ଭୁବନେଶ୍ୱର କାର୍ଯ୍ୟାଳୟ ଏବଂ ବ୍ରହ୍ମପୁର କାର୍ଯ୍ୟାଳୟ ମାଧ୍ୟମରେ ଆୟ ବ୍ୟୟ ବିବରଣୀର ଏକତ୍ରିତ ଫର୍ଦ୍ଦ ୧୯୯୪-୯୫, ୧୯୯୫-୯୬, ୧୯୯୬-୯୭ ଏବଂ ୧୯୯୭-୯୮ ପାଇଁ; ୧୩ ଓ ୧୪-୯-୯୭ ରେ ଅନୁଷ୍ଠିତ (ବ୍ରହ୍ମପୁରଠାରେ) ସ୍ୱତନ୍ତ୍ର ଅଧିବେଶନର ଆୟ ବ୍ୟୟ ଏବଂ ୧୯୯୮-୯୯ (୩୦-୧୧-୯୮ ପର୍ଯ୍ୟନ୍ତ) ବ୍ରହ୍ମପୁର କାର୍ଯ୍ୟାଳୟ ଆୟ ବ୍ୟୟ ଫର୍ଦ୍ଦ ଉପସ୍ଥାପିତ କରିଥିଲେ ।

ସଚିବ ଶ୍ରୀଚନ୍ଦନ ଭୁବନେଶ୍ୱର କାର୍ଯ୍ୟାଳୟ ମାଧ୍ୟମରେ ୧୯୯୯-୨୦୦୦ ଆର୍ଥିକ ବର୍ଷର ଆୟ ବ୍ୟୟ ଏବଂ ୨୦୦୦-୨୦୦୧ ବର୍ଷର ମେ ମାସ ଶେଷ ପର୍ଯ୍ୟନ୍ତ ଆୟ ବ୍ୟୟର ବିବରଣୀ ପେଶ୍ କରିଥିଲେ ।

ବ୍ରହ୍ମପୁର କାର୍ଯ୍ୟାଳୟ ମାଧ୍ୟମରେ ଆଜୀବନ ସଭ୍ୟ ଚାନ୍ଦା ଆଦାୟରୁ ୨୫ ହଜାର ଟଙ୍କା ସ୍ଥାୟୀ ଜମା ଗଚ୍ଛିତ ଥିବା ମହାସଚିବ ପ୍ରକାଶ କରିଥିଲେ । ସଂସ୍କୃତି ବିଭାଗରୁ ଗତ ବର୍ଷ ପର୍ଯ୍ୟନ୍ତ ବାର୍ଷିକ ୧୦ ହଜାର ଟଙ୍କା ପୌନପୌନିକ ଅନୁଦାନ ମିଳିଛି । ନିକଟରେ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟଠାରୁ ୧୦ ହଜାର ଟଙ୍କା, ଆନ୍ଧ୍ର ପ୍ରଦେଶର ମଞ୍ଜୁଷାଠାରେ ୨୬-୪-୨୦୦୦ ରୁ ୨୮-୪-୨୦୦୦ ପର୍ଯ୍ୟନ୍ତ ତିନି ଦିନିଆ ସେବା କାଳୀନ ଓଡିଆ ଅଧ୍ୟାପନା ପ୍ରଶିକ୍ଷଣ ଶିବିର ନିମନ୍ତେ ମିଳିଛି । ସଂସ୍କୃତି ବିଭାଗରୁ ମିଳିଥିବା ଅନୁଦାନ ବିନିଯୋଗ ଉପରେ ବିଭାଗୀୟ ସମୀକ୍ଷା ସରିଛି ବୋଲି ମହାସଚିବ କହିଥିଲେ ।

୧୯୯୮-୯୯ ଏବଂ ୧୯୯୯-୨୦୦୦ ଆର୍ଥିକ ବର୍ଷ ପାଇଁ ଭୁବନେଶ୍ୱର ଏବଂ ବ୍ରହ୍ମପୁର କାର୍ଯ୍ୟାଳୟ ଦ୍ୱୟର 'ଏକତ୍ରିତ ଆୟ ବ୍ୟୟ ଫର୍ଦ୍ଦ' ପ୍ରସ୍ତୁତ ହେବାପାଇଁ ସ୍ଥିରହେଲା । ସରକାରଙ୍କଠାରୁ ମିଳିଥିବା ବିଭିନ୍ନ ଅନୁଦାନ ଏବଂ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟରୁ ମିଳିଥିବା ଅନୁଦାନର ଆୟ ବ୍ୟୟ ଫର୍ଦ୍ଦ ପ୍ରସ୍ତୁତକରି ରଖିବାପାଇଁ ସ୍ଥିରହେଲା ।

ଭୁବନେଶ୍ୱର କାର୍ଯ୍ୟାଳୟ ମାଧ୍ୟମରେ କରାଯାଇଥିବା ଆୟ ବ୍ୟୟର ଫର୍ଦ୍ଦ ପେଶ୍ କରି ସଚିବ ଶ୍ରୀଚନ୍ଦନ ପ୍ରକାଶ କରିଥିଲେ - (୧) ୧୬-୫-୯୭ ରେ ୨୦ ହଜାର ଟଙ୍କାର ପାଞ୍ଚ ବର୍ଷିଆ ସ୍ଥାୟୀ ଜମା, (୨) ୯-୩-୯୯ ରେ ୮୫ ହଜାର ଟଙ୍କା ତିନି ବର୍ଷିଆ ସ୍ଥାୟୀ ଜମା ଏବଂ (୩) ୨୪-୫-୯୯ ରେ ୧୦ ହଜାର ଟଙ୍କାର ପାଞ୍ଚ ବର୍ଷିଆ ସ୍ଥାୟୀ ଜମା; ଏପରି ଏକ ଲକ୍ଷ ପନ୍ଦର ହଜାର ଟଙ୍କାର ସ୍ଥାୟୀ ଜମା ଯଥାକ୍ରମେ ୧୩% ଏବଂ ୧୨% (ଶେଷ ଦୁଇଟି ଜମା) ସୁଧରେ ସ୍ଥାନୀୟ ଓଡିଶା ରାଜ୍ୟ ସମବାୟ ବ୍ୟାଙ୍କ୍ ଲିଃ, ଭୁବନେଶ୍ୱର ଶାଖାରେ ଗଚ୍ଛିତ ରଖାଯାଇଛି । ତାହାର ସୁଧ ସଞ୍ଚୟ ଜମା ବହିକୁ ଆସୁଅଛି । ବର୍ତ୍ତମାନ ୦୩-୫-୨୦୦୦ ସୁଦ୍ଧା ସଞ୍ଚୟ ବ୍ୟାଙ୍କ୍ ଆକାଉଣ୍ଟ ପାସ୍ ବହିରେ ଟ.୨୪,୬୩୬.୩୫ ପଇସା ଗଚ୍ଛିତ ଅଛି । ସଞ୍ଚୟ ଜମା ବହିରୁ ୩-୯-୯୯ ପରେ ଆଉ ପାଣ୍ଠି ବାହାର

କରାଯାଇ ନାହିଁ । ତେଣୁ ଗତ ୯ ମାସ ମଧ୍ୟରେ ସୀମିତ ଆୟ (ଯାହା ସାଧାରଣତଃ ଆଜୀବନ ସଭ୍ୟ ଚାନ୍ଦା, ଫଟୋ, ପରିଚୟ ପତ୍ର, ପୁସ୍ତକ ଓ ସମାଚାର ବିକ୍ରି ଲବ୍ଧ ଅର୍ଥ) ଦୃଷ୍ଟିରୁ ଦୈନନ୍ଦିନ ଖର୍ଚ୍ଚ, ଖାରବେଳ ପୁସ୍ତକ ପ୍ରକାଶନ, କପିଳେନ୍ଦ୍ର ଦେବ ସେମିନାର୍ ଏବଂ ସାମୟିକ କର୍ମଚାରୀଙ୍କ ପାଉଣା ତଥା ଘର ଭଡା ଓ ବିଜୁଳି ଚାର୍ଯ ଦେବା ବାବଦକୁ ଧାରରେ ଟ.୧୦,୦୮୪=୦୦ ଖର୍ଚ୍ଚ ହୋଇଛି ।

ଘର ଭଡା ମାସିକ ୯୬୦ ଟଙ୍କା ହିସାବରେ ଗତ ଡିସେମ୍ବର ୯୯ ରୁ ମେ ୨୦୦୦ ପର୍ଯ୍ୟନ୍ତ ଟ.୧୫,୮୪୪=୦୦ ବାକି ପରିଶୋଧ କରିବାକୁ ପଡିବ । ଏହି ବକେୟା ଅର୍ଥ ସଞ୍ଚୟ ଜମା ବହିରୁ ବାହାର କରି ପରିଶୋଧ କରି ଦେବା ପାଇଁ ସ୍ଥିର ହେଲା ।

ଏତଦ୍‌ବ୍ୟତୀତ 'ଦେଶମିଶ୍ରଣ ଗୀତି' ମୁଦ୍ରଣ ବାବଦକୁ ଆଉ ୭୦୦ ଟଙ୍କା ପ୍ରେସ୍‌କୁ ଦେବାକୁ ବାକୀ ଅଛି, ତାହା ମଧ୍ୟ ପରିଶୋଧ କରିଦେବା ପାଇଁ ସ୍ଥିର ହେଲା ।

'ଉତ୍କଳ ସମ୍ମିଳନୀ ସମାଚାର' ବାବଦରେ ଏ ଯାବତ୍ ଆୟ ବ୍ୟୟ ଫର୍ଦ୍ଦ ବାହାର କରି ସ୍ୱତନ୍ତ୍ର ଭାବେ ହିସାବ ରଖିବାକୁ ସ୍ଥିର ହେଲା ।

ପୁସ୍ତକ ବିକ୍ରୟ କେନ୍ଦ୍ରର ଆୟ ବ୍ୟୟ ଫର୍ଦ୍ଦ ମଧ୍ୟ ସ୍ୱତନ୍ତ୍ର ଭାବେ ପ୍ରସ୍ତୁତ କରି ରଖାଯିବ ।

କୁପନ୍ ବିକ୍ରି ବନ୍ଦ ରଖା ଯାଇଥିଲେ ମଧ୍ୟ ତାହାର ସ୍ୱତନ୍ତ୍ର ହିସାବ ପ୍ରସ୍ତୁତ ହୋଇ ରହିବ । ଭୁବନେଶ୍ୱର ଶାଖା ସଭାପତି ନେଇଥିବା କୁପନର ହିସାବ ଦେବେ ଏବଂ ଆଦାୟ ଅର୍ଥ ପଇଠ କରିବେ କିମ୍ବା ମଜୁରା କରିବା ପାଇଁ ପ୍ରସ୍ତାବ ଦେବେ ।

ଓଡିଆ ଅଧ୍ୟୟନ କେନ୍ଦ୍ରର ଆୟ ବ୍ୟୟ ଫର୍ଦ୍ଦ ଆଣି ସମୀକ୍ଷା କରାଯିବ ।

<u>ଦ୍ୱିତୀୟ ପ୍ରସ୍ତାବ</u>

ଉତ୍କଳ ଗୌରବ ମଧୁସୂଦନ ପୁସ୍ତକ ପାଇଁ ପାଣ୍ଠି ସଂଗ୍ରହ ନିମନ୍ତେ ଦୁଇଟି ରସିଦ୍ ବହି ଶ୍ରୀ ପଦ୍ମଚରଣ ନାୟକଙ୍କୁ ଦିଆଯାଇଥିଲା । ସେ ରଜନୀ ଭୂଷଣ ପାଣିଙ୍କୁ ଚାନ୍ଦା ଆଦାୟ ପାଇଁ ଏହି ଦୁଇଟି ଦେଇଥିଲେ ବୋଲି କହନ୍ତି । ରଜନୀ ପାଣିଙ୍କର ଦେହାନ୍ତ ହୋଇ ଯିବାରୁ ଏହି ଦୁଇଟି ରସିଦ୍ ବହି ସେ କାହାକୁ ଦେଇଛନ୍ତି, ଜଣାପଡୁ ନାହିଁ । ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର ରଜନୀ ଭୂଷଣ ପାଣିଙ୍କ ସହଧର୍ମିଣୀଙ୍କ ସହ ସାକ୍ଷାତ କରି ଏହି ରସିଦ୍ ବହି ସମ୍ପର୍କରେ ଆଲୋଚନା କରିବେ ଏବଂ ପାଇବାକୁ ଚେଷ୍ଟା କରିବେ । ଶ୍ରୀ ପଦ୍ମଚରଣ ନାୟକ ପ୍ରେସ୍ ସହ ପ୍ରତ୍ୟକ୍ଷ କଥାବାର୍ତ୍ତା କରି ଏହି ପୁସ୍ତକ ଛପାଇବାରେ ଆୟ ଏବଂ ବ୍ୟୟ ଫର୍ଦ୍ଦ ପ୍ରସ୍ତୁତ କରି ଆଗାମୀ ବୈଠକ ପୂର୍ବରୁ ରାଜ୍ୟ କାର୍ଯ୍ୟାଳୟରେ ଦାଖଲ କରିବେ । ଲେଖକଙ୍କର ରାଜ ଭାଗ ଦେବାକୁ ସ୍ଥିର ହେଲା ।

## ତୃତୀୟ ପ୍ରସ୍ତାବ

ଶାଖାମାନଙ୍କଠାରୁ ସେମାନଙ୍କର ଅଧିବେଶନ ଓ ବୈଠକ ବିବରଣୀ ରାଜ୍ୟ କାର୍ଯ୍ୟାଳୟକୁ ଆସୁନାହିଁ । ରାଉରକେଲା ଶାଖା ଅପ୍ରେଲ୍ ପହିଲା ଓଡିଶା ଦିବସରେ ସ୍ୱତନ୍ତ୍ର ଅଧିବେଶନ କରିଥିଲେ, ତାହାର ବିବରଣୀ ରାଜ୍ୟ କାର୍ଯ୍ୟାଳୟରେ ପହଞ୍ଚି ନାହିଁ । ସେହିପରି ସୋରୋ ଶାଖାର ବାର୍ଷିକ ଅଧିବେଶନ ହୋଇଯାଇଛି । ତାହାର ବିବରଣୀ ମଧ ହସ୍ତଗତ ହୋଇନାହିଁ । ଶାଖାମାନ ସେମାନଙ୍କର ଅଧିବେଶନ ଓ କାର୍ଯ୍ୟ ନିର୍ବାହୀ ସମିତି ବୈଠକ ବିବରଣୀ ରାଜ୍ୟ କାର୍ଯ୍ୟାଳୟକୁ ପଠାଇବା ପାଇଁ ଅନୁରୋଧ କରାଗଲା । ବାର୍ଷିକ ଆୟ ବ୍ୟୟ ହିସାବ ଫର୍ଦ୍ଦ ପଠାଇବା ପାଇଁ ମଧ ଅନୁରୋଧ କରାଗଲା । ଶାଖାମାନେ ଆଜୀବନ ସଭ୍ୟ ତାଲିକା ଅଦ୍ୟତନ କରି ପଠାଇଲେ ରାଜ୍ୟସ୍ତରୀୟ ଜିଲ୍ଲାବାରୀ ଆଜୀବନ ସଭ୍ୟ ତାଲିକା ଚୂଡାନ୍ତ ହେବ । ତେଣୁ ସଭ୍ୟ ତାଲିକା ପଠାଇବା ପାଇଁ ଅନୁରୋଧ କରାଗଲା ।

## ଚତୁର୍ଥ ପ୍ରସ୍ତାବ

ପୁରୀ ଜିଲ୍ଲା ଶାଖା ଆଡ୍‌ହକ ଅବସ୍ଥାରେ ଗତ ଦୁଇ ତିନି ବର୍ଷ ଧରି ରହିଅଛି । ଏହାର ନିର୍ବାଚନ କରାଇ ବିଧିବଦ୍ଧ କାର୍ଯ୍ୟ ନିର୍ବାହୀ ସମିତି ଗଠନ କରାଯିବାକୁ ଅନୁରୋଧ କରାଗଲା । ଶ୍ରୀଯୁକ୍ତ ହରିହର ବାହିନୀପତି, ସଦସ୍ୟ ଏ ଦିଗରେ କାର୍ଯ୍ୟାନୁଷ୍ଠାନ କରିବାକୁ ବୈଠକରେ ଅନୁରୋଧ କରାଗଲା ।

## ପଞ୍ଚମ ପ୍ରସ୍ତାବ

ପାଣ୍ଠିର ସ୍ୱଚ୍ଛତା ଦୃଷ୍ଟିରୁ ଦୈନନ୍ଦିନ ଖର୍ଚ୍ଚ ଏବଂ ସାମୟିକ ଜରୁରୀ ଖର୍ଚ୍ଚ ତୁଲାଇବା ପାଇଁ ସଂଗୃହୀତ ଆଜୀବନ ସଭ୍ୟ ଚାନ୍ଦା ଗଚ୍ଛିତ ନ ହୋଇ ଖର୍ଚ୍ଚ ହୋଇଯାଉଛି । ସ୍ଥାୟୀ ଗଚ୍ଛିତ ପାଣ୍ଠିରୁ ମିଳୁଥିବା ସୁଧ ଖର୍ଚ୍ଚ ତୁଲାଇବା ପାଇଁ ଯଥେଷ୍ଟ ହେଉନାହିଁ । ତେବେ ଖର୍ଚ୍ଚ ହୋଇ ଯାଇଥିବା ଆଜୀବନ ସଭ୍ୟ ଚାନ୍ଦା ଭରଣା କରିବା ପାଇଁ ପାଣ୍ଠି ସଂଗ୍ରହ ଅଭିଯାନ କରିବାକୁ ଶ୍ରୀ ହରିହର ବାହିନୀପତି ପ୍ରସ୍ତାବ ଦେଇଥିଲେ । ତାହା ଗୃହୀତ ହୋଇଥିଲା ।

## ଷଷ୍ଠ ପ୍ରସ୍ତାବ

ଷଢ଼େଇକଳା-ଖରସୁଆଁ ପୁନଃମିଶ୍ରଣ ଦାବୀ ନେଇ ଚାରିଜଣିଆ ପ୍ରତିନିଧି ମଣ୍ଡଳୀ ଦିଲ୍ଲୀ ଯାଇ ପ୍ରଧାନମନ୍ତ୍ରୀ, ସ୍ୱରାଷ୍ଟ୍ରମନ୍ତ୍ରୀ, ଅନ୍ୟ ରାଜନୈତିକ ନେତା ଓ ଓଡିଶାର ସାଂସଦମାନଙ୍କୁ ଭେଟିଥିଲେ । ସେମାନଙ୍କ ଯିବା ଆସିବା ଖର୍ଚ୍ଚ ବାବଦକୁ ୨୫ ହଜାର ଟଙ୍କାରୁ ଉର୍ଦ୍ଧ୍ୱ ଖର୍ଚ୍ଚ ହୋଇଛି । ଷଢ଼େଇକଳା-ଖରସୁଆଁ କ୍ରିୟାନୁଷ୍ଠାନ କମିଟି ପ୍ରସ୍ତାବ କ୍ରମେ ସଭାପତି ଓ ସଚିବ ଏହି ଅର୍ଥ ଧାର ସୂତ୍ରରେ ବ୍ୟବସ୍ଥା କରିଛନ୍ତି । ପ୍ରଚାର ପତ୍ର ଛପାଇବା ଏବଂ ଅନ୍ୟାନ୍ୟ କାର୍ଯ୍ୟକ୍ରମରେ ବହୁତ ଅର୍ଥ ଖର୍ଚ୍ଚ ହୋଇଛି । ଏ ସମସ୍ତ ଖର୍ଚ୍ଚ ଏବଂ ଆଗକୁ ହେବାକୁ ଥିବା ଖର୍ଚ୍ଚ ପାଇଁ ପାଣ୍ଠି ଉଠାଇବା ନିମନ୍ତେ ପାଣ୍ଠି ସଂଗ୍ରହ ଅଭିଯାନ ତୁରନ୍ତ କରାଯିବାକୁ ସ୍ଥିର

ହେଲା । ସଭାପତି ଓ ମହାସଚିବଙ୍କ ନେତୃତ୍ୱରେ ସମ୍ମିଳନୀ ରସିଦ ବହିରେ ଦାନ ସଂଗ୍ରହ କରାଯିବ ।

<u>ସପ୍ତମ ପ୍ରସ୍ତାବ</u>

'ଷଢ଼େଇକଳା-ଖରସୁଆଁ ଫେରାଇ ଦିଅ' ଦାବୀ ସାକାର କରିବା ପାଇଁ ରାଜ୍ୟ ସରକାରଙ୍କୁ ଆଗାମୀ ବିଧାନ ସଭା ଅଧିବେଶନରେ ପ୍ରଥମ ଦିନରେ ସର୍ବସମ୍ମତ ପ୍ରସ୍ତାବ ସହ ଏକ 'ଷଢ଼େଇକଳା-ଖରସୁଆଁ ପୁନଃମିଶ୍ରଣ ବିଲ୍' ଗୃହୀତ କରାଇବା ପାଇଁ ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରି ଅନୁରୋଧ କରାଯିବାକୁ ସ୍ଥିର ହେଲା । ଏଥିପାଇଁ ଜନଜାଗରଣ ସୃଷ୍ଟି କରିବାକୁ ଉପାନ୍ତ ଅଞ୍ଚଳ, ବିଚ୍ଛିନ୍ନାଞ୍ଚଳ ଏବଂ ବିଭିନ୍ନ ନଗରମାନଙ୍କରେ 'କନ୍‌ଭେନ୍‌ସନ୍' କରାଯିବାକୁ ନିଷ୍ପତ୍ତି ନିଆଗଲା । ଏ ଦୃଷ୍ଟିରୁ ସମ୍ବିଧାନ ସଂଶୋଧନ/ ପରିଷଦ ଗଠନ ଆଗାମୀ ସେପ୍ଟେମ୍ବର ମାସ ଏବଂ କାର୍ଯ୍ୟ ନିର୍ବାହୀ ସମିତି ନିର୍ବାଚନ ଅକ୍ଟୋବର ମାସରେ ହେବା ପାଇଁ ସ୍ଥିର ହେଲା ।

ପରିଶେଷରେ ସଭାପତିଙ୍କୁ ଧନ୍ୟବାଦ ଜଣାଇ ସଭା ସାଙ୍ଗ ହେଲା ।

| | | |
|---|---|---|
| ଗୋପାଳକୃଷ୍ଣ ଶ୍ରୀଚନ୍ଦନ | ବସନ୍ତ କୁମାର ପାଣିଗ୍ରାହୀ | ହରିଶ୍ଚନ୍ଦ୍ର ବକ୍ସିପାତ୍ର |
| ସଚିବ | ମହାସଚିବ | ସଭାପତି |

## ତା-୯-୮-୨୦୦୦ ବୁଧବାର ପୂର୍ବାହ୍ନ ୧୧ ଘଣ୍ଟା ସମୟରେ ଭୁବନେଶ୍ୱର ସମ୍ମିଳନୀ କାର୍ଯ୍ୟାଳୟଠାରେ ଅନୁଷ୍ଠିତ କାର୍ଯ୍ୟ ନିର୍ବାହୀ ସମିତି ବୈଠକ ବିବରଣୀ

ଉପସ୍ଥିତ ସଭ୍ୟ :

(୧) ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର (୨) ଦଣ୍ଡପାଣି ବେହେରା (୩) ବିଶ୍ୱନାଥ କର (୪) ବସନ୍ତ କୁମାର ପାଣିଗ୍ରାହୀ (୫) ଲକ୍ଷ୍ମଣ ଦାସ (୬) ଅର୍ଜୁନ ସାହୁ (୭) ରବି ପାଣି (୮) କୈଳାସ ଆଚାର୍ଯ୍ୟ (୯) ଅନ୍ନପୂର୍ଣ୍ଣା ମିଶ୍ର (୧୦) ପଦ୍ମଚରଣ ନାୟକ (୧୧) ଶ୍ରୀଚରଣ ସ୍ୱାଇଁ (୧୨) ଗୋପାଳକୃଷ୍ଣ ଶ୍ରୀଚନ୍ଦନ ।

ସଭାପତି ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ସଭାପତିତ୍ୱରେ ବୈଠକ ନିର୍ଦ୍ଦିଷ୍ଟ ସମୟରେ ଆରମ୍ଭ ହୋଇଥିଲା ।

ଗତ ବୈଠକ ବିବରଣୀ ପାଠ କରାଯାଇ ଠିକ୍ ଥିବାରୁ ଦୃଢ଼ୀକୃତ ହୋଇଥିଲା । ଏବଂ ବିଭିନ୍ନ ପ୍ରସ୍ତାବ ଉପରେ କି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଚି, ତାହାର ସମୀକ୍ଷା ହୋଇଥିଲା ।

୧. ରାୟଗଡା ଜିଲ୍ଲା ମଝି ଘରିଆଣୀ ନାମରେ ନାମିତ ଷ୍ଟେସନ ନାମ ବିକୃତ ଭାବେ ନାମିତ ହୋଇଥିବାରୁ ଏ ସମ୍ପର୍କରେ ସ୍ୱତନ୍ତ୍ର ଭାବେ ରାଜ୍ୟ ପରିବହନ ବିଭାଗ ଓ କେନ୍ଦ୍ର ରେଳବାଇର ସଂପୃକ୍ତ ବିଭାଗକୁ ପତ୍ର ଦେବା ପାଇଁ ସ୍ଥିର ହେଲା ।

୨. ୧୯୯୯ ସ୍ୱାଭିମାନ ଦିବସ (ମଧୁ ଜୟନ୍ତୀ) ଗତ ୧୯୯୯ ଜୁନ୍ ମାସରେ ଚକ୍ରଧରପୁର-ପୁରୁଣା ବସ୍ତିରେ ପାଳିତ ହୋଇଯାଇଛି । ବାକି ପଶ୍ଚିମ ବଙ୍ଗର ଖଡ୍‌ଗପୁରଠାରେ ଚଳିତ ମାସରେ ପାଳିତ ହେବାକୁ ନିଷ୍ପତ୍ତି ନିଆଗଲା । ଏହି ପାଳନ ରିପୋର୍ଟ ମଳିଲା ପରେ ରାଜ୍ୟ ସଂସ୍କୃତି ନିର୍ଦ୍ଦେଶାଳୟକୁ ଜଣାଇ ଏ ସମ୍ପର୍କୀୟ ଅନୁଦାନ ପ୍ରାପ୍ତି ନିମନ୍ତେ ଅନୁରୋଧ କରାଗଲା ।

୩. ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର 'ଉତ୍କଳ ଗୌରବ ମଧୁସୂଦନ' ପୁସ୍ତକ ପ୍ରକାଶନ ସମ୍ପର୍କୀୟ ହିସାବ ଉପରେ ଗତ ବୈଠକରେ ତାଙ୍କୁ ଯେଉଁ ଦାୟିତ୍ୱ ଦିଆଯାଇଥିଲା, ତାହାର କାର୍ଯ୍ୟକାରିତା ବିବରଣୀ ବୈଠକରେ ମୌଖିକ ପ୍ରଦାନ କରିଥିଲେ ।

୪. ଏହି ପୁସ୍ତକ ସମ୍ପର୍କୀୟ ସର୍ବଶେଷ ହିସାବ ଏବଂ କୁପନ୍ ମାଧ୍ୟମରେ ସଂଗୃହୀତ ପାଣ୍ଠି ତଥା ବିନିଯୋଗର ହିସାବ ଶ୍ରୀଯୁକ୍ତ ପଦ୍ମଚରଣ ନାୟକ, ସଭାପତି, ଭୁବନେଶ୍ୱର ଶାଖା ପ୍ରସ୍ତୁତ କରି ଜଣାଇବା ପାଇଁ ଅନୁରୋଧ କରାଗଲା ।

୫. ଗତ ବୈଠକରେ ଗୃହୀତ ୩ୟ, ୪ର୍ଥ, ୫ମ, ୬ଷ୍ଠ ଏବଂ ୭ମ ପ୍ରସ୍ତାବ ଗୁଡିକ ଉପରେ ଅଦ୍ୟତନ ସ୍ଥିତି-ସମୀକ୍ଷା କରାଯାଇ ଏଗୁଡିକର କାର୍ଯ୍ୟକାରିତାକୁ ତ୍ୱରାନ୍ୱିତ କରାଇବାକୁ ସ୍ଥିର ହେଲା ।

୬. ଆଗାମୀ ସେପ୍ଟେମ୍ବର ଶେଷଭାଗ କିମ୍ବା ଅକ୍ଟୋବର ପ୍ରଥମ ଭାଗରେ ସମ୍ବିଧାନ ସଂଶୋଧନ, ସାଧାରଣ ପରିଷଦ ଗଠନ ଏବଂ ନୂତନ କାର୍ଯ୍ୟ ନିର୍ବାହୀ ସମିତି ନିର୍ବାଚନ ନିମନ୍ତେ ପଦକ୍ଷେପ ନେବାକୁ ସ୍ଥିର ହେଲା । ଏଥିପାଇଁ ଆହୂତ ସାଧାରଣ ଅଧିବେଶନ ସ୍ଥାନ ସଭାପତି ଓ ମହାସଚିବ ନିରୂପଣ କରି ଅଧିବେଶନ ଆହ୍ୱାନ କରିବାକୁ ଉଚିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ପାଇଁ ଅନୁରୋଧ କରାଗଲା ।

୭. ‘ଉତ୍କଳ ସମ୍ମିଳନୀ ସମାଚାର’ର ୮ମ ସଂଖ୍ୟା ତଥା ‘ଷଢ଼େଇକଳା-ଖରସୁଆଁ ବିଶେଷାଙ୍କ’ ଅଗଷ୍ଟ ମାସ ମଧ୍ୟରେ ପ୍ରକାଶିତ ହେବା ପାଇଁ ତ୍ୱରାନ୍ୱିତ ପଦକ୍ଷେପ ନେବାକୁ ସ୍ଥିର ହେଲା ।

୮. ଆଜିର ଏକମାତ୍ର ଆଲୋଚ୍ୟ ବିଷୟ - ‘ଷଢ଼େଇକଳା-ଖରସୁଆଁ ପୁନଃମିଶ୍ରଣ ଦାବୀ’ ଉପରେ ବିସ୍ତାରିତ ଆଲୋଚନା କରାଯାଇ ଆଗାମୀ ଅଗଷ୍ଟ ୧୧ରେ ପ୍ରସ୍ତାବିତ ‘ଓଡିଶା ବନ୍ଦ’କୁ ସର୍ବତୋଭାବେ ସଫଳ କରାଇବା ପାଇଁ ଶାଖାମାନଙ୍କୁ ନିର୍ଦ୍ଦେଶ ଦେବା ଓ ସମସ୍ତ ପ୍ରକାର ଉଦ୍ୟମ କରିବା ନିମନ୍ତେ ପ୍ରସ୍ତାବ ଗୃହୀତ ହେଲା । ସମ୍ମିଳନୀର ଆଦର୍ଶ ଓ ସମ୍ବିଧାନ ପରିସର ମଧ୍ୟରେ ଏହି ଜନଜାଗରଣ-ଆନ୍ଦୋଳନ ମଝିରେ ମଝିରେ ସମୀକ୍ଷା ପୂର୍ବକ ଲକ୍ଷ୍ୟ ହାସଲ ପର୍ଯ୍ୟନ୍ତ ଜାରୀ ରଖିବାକୁ ସ୍ଥିର ହେଲା ।

ପରିଶେଷରେ ସଭାପତିଙ୍କୁ ଧନ୍ୟବାଦ ଜଣାଇ ସଭା ସାଙ୍ଗ ହେଲା ।

ଗୋପାଳକୃଷ୍ଣ ଶ୍ରୀଚନ୍ଦନ
ସଚିବ
(୧୪-୮-୨୦୦୦)

ବସନ୍ତ କୁମାର ପାଣିଗ୍ରାହୀ
ମହାସଚିବ

ହରିଶ୍ଚନ୍ଦ୍ର ବକ୍ସିପାତ୍ର
ସଭାପତି

